

# ଦେଶ ବିଦେଶର ବୁଢ଼ୀମା' କାହାଣୀ

ପଠାଣି ପଟ୍ଟନାୟକ

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

# ଦେଶ ବିଦେଶର

# ବୁଢ଼ୀମା' କାହାଣୀ

ଫ୍ରାନ୍ସ ଲୋକଗଳ୍ପ

ସୋଭିଏତ୍ ଋଷିଆ ଲୋକଗଳ୍ପ

ଚୀନ୍ ଦେଶ ଲୋକଗଳ୍ପ

ପୁରାଣ ଲୋକଗଳ୍ପ

ଗ୍ରୀସ ଦେଶ ଲୋକଗଳ୍ପ

ଭାରତର ଲୋକଗଳ୍ପ

କଥାସରିତ୍‌ସାଗର ଲୋକଗଳ୍ପ

# ଦେଶ ବିଦେଶର
# ବୁଢ଼ୀମା' କାହାଣୀ

ପଠାଣି ପଟ୍ଟନାୟକ



ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ, କଟକ-୨

ଦେଶ ବିଦେଶର ବୁଢ଼ୀମା' କାହାଣୀ— ସଂକଳକ : ପଠାଣି ପଟ୍ଟନାୟକ, ପ୍ରକାଶକ : ଶ୍ରୀ ଗଙ୍ଗାଧର ତ୍ରିପାଠୀ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବିନୋଦ ବିହାରୀ, କଟକ-୭୫୩୦୦୨, ପ୍ରଥମ ପ୍ରକାଶ : ୨୦୦୪, ମୁଦ୍ରଣ: ସାହୁ କମ୍ପ୍ୟୁଟର ୟୁନିଟ୍ ଏବଂ ସଂଗୀତା ପ୍ରିଣ୍ଟର୍ସ, କଟକ, ମୂଲ୍ୟ : ଟ. ୭୦-୦୦ ମାତ୍ର ।



**Desa Bidesara Budhima Kahani**—**Compilation :** Pathani Patnaik, **Publisher :** Sri Gangadhara Tripathy, **Prachi Sahitya Pratisthan**, Binodbihari, Cuttack-753002, First Edition : 2004, **Printer :** Sahoo Computer Unit & Sangita Printers, Cuttack, **Price :** Rs.70-00 only.

# ଉତ୍ସର୍ଗ

ଆଦରର ନାତୁଣୀ ଓ ନାତିମାନେ,

କେତେ ଆଗ୍ରହରେ ଗପଗୁଡ଼ିକ ଶୁଣିଥିଲ, ଖୁସୀ ହେଉଥିଲ । ଏବେ ହୁଏତ ଭୁଲିଯିବଣି । ବହିଟି ପଢ଼ି ଆଉଥରେ ମନକୁ ଖେଳେଇ ନେବ । ସେଥିପାଇଁ ତୁମମାନଙ୍କୁ ମନେ ପକାଉଛି—

ଶିଖା (କିଟି), ସଙ୍କେତ (ଚନ୍ଦନ), ସୁଦେଷ୍ଣା (ତିତିଲି), ପ୍ରାଚୀ (ପୁତୁଲି) ଓ ପ୍ଲାବନ (ବଗୁଲିଆ) ତୁମମାନଙ୍କ ହାତରେ ବହିଟି ଦେଲି ।

ଆଶୀର୍ବାଦକ
ଅଜା/ଜେଜେ
(ପଠାଣି ପଟ୍ଟନାୟକ)

# ଅଗ୍ରଲେଖ

ଅନେକ ସମୟରେ ଅବସର ଜୀବନ ବଡ଼ ଏକା ଏକା ଲାଗେ । ଯଦି ନାତିନାତୁଣୀମାନଙ୍କର ଛୁଟିଦିନ ହୋଇଥାଏ, ତାହାହେଲେ ସେମାନଙ୍କ ଗହଣରେ ଦିନଟି କେତେବେଳେ ମୁହଁ ଲୁଚାଇଦିଏ, ଜଣାପଡ଼େ ନାହିଁ । ସେମାନେ ଜିଗର କରନ୍ତି 'ଜେଜେ, ଗପଟିଏ କହ', 'ଅଜା, କାହାଣୀଟିଏ କହ' ।

ସତେ ତ, ଛୋଟ ପିଲାମାନଙ୍କୁ ଗପଟିଏ ଶୁଣାଇବାରେ କେତେ ଆନନ୍ଦ ମିଳେ । ପିଲାମାନଙ୍କ ଆଖିରେ କେତେ ପ୍ରଶ୍ନବାଚୀର ଇଙ୍ଗିତ, କେତେ କୌତୁକ ଓ ଖଳ ଖଳ ହସର ଝଲକ । ସରଳ ବିଶ୍ୱାସରେ ସେମାନେ ଶୁଣୁଥାଆନ୍ତି ଅସୁର ଅସୁରୁଣୀ କଥା, ରାଜାରାଣୀଙ୍କ କାହାଣୀ, ପରୀରାଇଜର ଭେଲିକି ଏବଂ ସର୍ବୋପରି ଭୂତ ରାଇଜର ଇନ୍ଦ୍ରଜାଲ ।

ଗଳ୍ପ କହିବାର ଧାରା ବନ୍ଦ ନ ହେଉ । ଏହାହିଁ ପିଲାମାନଙ୍କର ଇଚ୍ଛା । ଏଥିପାଇଁ ସେମାନେ ଆଦୌ ହାଲିଆ ହୁଅନ୍ତି ନାହିଁ । ସେମାନେ ଗଳ୍ପ ଶୁଣିବା ପାଇଁ ଜିଗର କରିନଥିଲେ ଏହି କାହାଣୀ-ସଂଚୟନ ସମ୍ଭବ ହୋଇନଥାନ୍ତା ।

କାହାଣୀପେଡ଼ି ପୃଥିବୀର ସବୁ ଭାଷାରେ, ସବୁ ସମାଜରେ । ନାନା ଦେଶର କାହାଣୀ ମଧ୍ୟରେ ଚମତ୍କାର ଯୋଗସୂତ୍ର । ରହସ୍ୟ ରୋମାଞ୍ଚ ଭରି ରହିଥାଏ ନାନା ଭାବରେ ।

ଘର ପିଲାଏ ସିନା କାହାଣୀ ଶୁଣିଲେ । ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ପତ୍ରିକାମାନଙ୍କରେ ଗଳ୍ପଗୁଡ଼ିକ ପ୍ରକାଶିତ ହେବାରୁ ମୋ ଦେଶର ଅଗଣିତ ପିଲାମାନଙ୍କର ସୁଖାନୁଭୂତି ସହିତ ଭାଗୀଦାର ହେଉଥିଲି । ଏହି ଅବସରରେ ସେହି ପତ୍ରିକାର ସମ୍ପାଦକମାନଙ୍କୁ କୃତଜ୍ଞତା ଜଣାଉଛି ।

'ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ' ଆନୁକୂଲ୍ୟରେ ଏହି କାହାଣୀଗୁଡ଼ିକ ସଂକଳିତ ହେଲା । ଏହା ପୂର୍ବପରି ପାଠକୀୟ ଶ୍ରଦ୍ଧା ଅର୍ଜନ କରିପାରିଲେ ଅତ୍ୟନ୍ତ ସୁଖ ଅନୁଭବ କରିବି । ପ୍ରକାଶକ ପରିବାରର ଭ୍ରମର ବାବୁ, ଆଦରଣୀୟ ଶକ୍ତିପ୍ରସାଦ ଓ ବିଭୂପ୍ରସାଦଙ୍କର ଶୁଭକାମନା କରୁଛି । ପ୍ରଭୁ ଶ୍ରୀଜଗନ୍ନାଥ ମଙ୍ଗଳ କରନ୍ତୁ ।

ପଠାଣି ପଟ୍ଟନାୟକ
କେନ୍ଦୁଝର କଲୋନୀ
କଟକ -୮

# ସୂଚୀ

# ମାଆ ପରି ଆଉ କିଏ ?



ଫରାସୀ ଦେଶର ପରୀକାହାଣୀରେ 'ହେନେରୀ'କୁ ସମସ୍ତେ ମନେ ରଖିଛନ୍ତି । ମାତ୍ର ସାତବର୍ଷର ପିଲା ହେଉଛି ହେନେରୀ । ତା'ର ମାଆ ଥିଲେ ଅତ୍ୟନ୍ତ ଦୁଃଖିନୀ । ସେ ଥିଲେ ତା'ର ଏକମାତ୍ର ଭରସା । କାରଣ ପିଲାଟିଦିନୁ ସେ ବାପାକୁ ହରାଇଥିଲା । ଗାଁ ବାହାରେ ଛୋଟ କୁଡ଼ିଆଘରେ ମାଆ ପୁଅ ରହୁଥାଆନ୍ତି । ମା' ପ୍ରତିଦିନ କିଛି କିଛି ସିଲେଇକାମ କରନ୍ତି ଓ ତାକୁ ନେଇ ହାଟରେ ବିକି ଯାହା ରୋଜଗାର କରନ୍ତି, ସେଇଥିରେ କୌଣସିପ୍ରକାରେ ଗୁଜୁରାଣ ଚଳିଯାଏ ।

ପିଲା ହେଲେ କ'ଣ ହେବ, ହେନେରୀର ଭାରୀ ବୁଦ୍ଧି । ସେ ମା'କୁ କାମରେ ସାହାଯ୍ୟ କରିବା ପାଇଁ ଦିନରାତି ଲାଗିପଡ଼ିଥାଏ । ମା'ଙ୍କ ପାଇଁ ସେ ଘର ଓଳାଇପକାଏ, କାଠ ଚିରିଦିଏ, ବଗିଚାରେ କାମ କରେ, ମା'ଙ୍କ ପାଇଁ ଫୁଲ ତୋଳିଆଣେ, ଘରେ ଚୌକି-ବେଞ୍ଚ ସଜାଡ଼ିଦିଏ, ଲୁଗା ସଫା କରିଦିଏ, ନଚେତ୍ ମା'ଙ୍କର ଓ ତା'ର ଜୋତାରେ ରଙ୍ଗ ଲଗାଇବସେ । ମୋଟ ଉପରେ ତା'ର ଶକ୍ତି ଅନୁସାରେ ସେ ଅନବରତ ଘରକାମରେ ଲାଗିରହିଥାଏ ଏବଂ ମା'କୁ ସାହାଯ୍ୟ କରିଚାଲିଥାଏ ।

ସହଜେ ତ ଗାଁମୁଣ୍ଡର ନିକାଞ୍ଚନିଆ ଘର, ପୁଣି ସେମାନେ ଦୁଃଖୀଲୋକ । ତେଣୁ ସେମାନଙ୍କର ଦୁଃଖ-ସୁଖରେ କେହି ହାନି-ଲାଭ ପଚାରନ୍ତି ନାହିଁ । ଯଦି ହାତରେ କାମ ନଥାଏ, ତେବେ ହେନେରୀ ଘରର ଝରକା ଫାଙ୍କରେ ଅଦୂରର ପାହାଡ଼ ଆଡ଼ିକି ଚାହିଁ

ବସିଥାଏ । ପାହାଡ଼ଟି ଏତେ ଉଚ୍ଚ ଯେ ଚାହିଁଲେ ଠେକା ଖସିପଡ଼ିବ । ପାହାଡ଼ ଦେହରେ କେତେ ଝରଣା, ପାଚେରୀ ପରି ବଡ଼ ବଡ଼ ଅକର୍ମଶିଳାମାନ ଚାରିଆଡ଼େ ଘେରିରହିଛି । ବଡ଼ ବଡ଼ ବୃକ୍ଷରେ ପାହାଡ଼ର ଜଙ୍ଗଲ ଭରପୂର । ସମସ୍ତେ କହନ୍ତି, ସେ ପାହାଡ଼କୁ ଆଜିପର୍ଯ୍ୟନ୍ତ କେହି ଚଢ଼ି ଯାଇପାରିନାହାନ୍ତି । ଯଦି କେହି ବେଖାତିର କରି ପାହାଡ଼ ଚଢ଼ିଛି ତ ସେ ଆଉ ଫେରିଆସି ପାରିନାହିଁ । ତେଣୁ ସେ ଗାଁର ଲୋକମାନେ ପାହାଡ଼କୁ ଚାହିଁ ଭୟରେ ମୁଣ୍ଡିଆ ମାରନ୍ତି ।

ଏଇମିତି କେତେଦିନ ସୁଖ-ଦୁଃଖରେ ଚାଲିଗଲା । ହେନେରୀର ମା' ବେମାର ପଡ଼ିଲେ । ହାତରେ କେଉଁ ପଇସା ଅଛି ଯେ, ଡାକ୍ତର ଦେଖାଇ ଔଷଧ ଖାଇବେ । କରମ ଆଦରି ଖଟିଆ ଉପରେ ପଡ଼ିଥାଆନ୍ତି । ବିଚରା ହେନେରୀ ଅବା ଆଉ କ'ଣ କରିବ । ମା'ଙ୍କ ବିନା ତା'ର ମଧ୍ୟ ଖିଆପିଆ ନାହିଁ । ମା'ଙ୍କ ପାଖରେ ରାତିଦିନ ଜଗି ବସିଥାଏ । ମା'ଙ୍କୁ ଶୋଷ ହେଲେ ପାଣି ମୁନ୍ଦିଏ ପିଇବାକୁ ଦିଏ । ମା'ଙ୍କ କଥା ଭାବି ଭାବି ତା'ର ଆଖିରୁ ଲୁହ ଝରିଆସେ । କାଳେ ମା' ଦେଖିବେ ବୋଲି ମୁହଁ ବୁଲାଇ ଆଖି ପୋଛିଦିଏ ।

ଚାହୁଁ ଚାହୁଁ ଅବସ୍ଥା ଆହୁରି ଖରାପ ହୋଇଗଲା । ସେଦିନ ହେନେରୀର ମା' ବଡ଼ ଛାଟିପିଟି ହେଲେ । ତାଙ୍କର ପାଟିରେ ପାଣି ଗଳିଲା ନାହିଁ । ସେ ଆଉ ହେନେରୀକୁ ମଧ୍ୟ ଚିହ୍ନିପାରିଲେ ନାହିଁ । ହେନେରୀ ଏବେ ଆଉ କ'ଣ କରିବ ? ବଡ଼ ବ୍ୟସ୍ତ ହେଉଥାଏ । ଯଦି ମା' ମରିଯାଆନ୍ତି, ତା'ର ଅବସ୍ଥା କ'ଣ ହେବ ? ଭାଇ-ବନ୍ଧୁ ବୋଲି ଏ ସଂସାରରେ ତା'ର ଆପଣାର ଆଉ କେହି ନାହାନ୍ତି । ତା'ର ମନେପଡ଼ିଲା ମା'ଙ୍କ କଥା । ମା' ସବୁବେଳେ ତାକୁ ବୁଝାଇ କହନ୍ତି, ବିପଦବେଳେ ତୋ ପାଇଁ 'ପରୀରାଣୀ' ଅଛନ୍ତି । ତାଙ୍କୁ ଡାକିଲେ ତୋର ସବୁ ବିପଦ କଟିଯିବ ।

ସେ ବଡ଼ ବିକଳ ହୋଇ ଡାକିଲା, "ହେ ପରୀରାଣୀ ! ତୁମେ ଆମ ଘରକୁ ଆସ, ଆଉ ମୋ ମା'ଙ୍କୁ ଭଲ କରିଦିଅ ।" ଅତ୍ୟନ୍ତ ବିକଳସ୍ୱରରେ ପ୍ରାର୍ଥନା କରି ସେ ପରୀରାଣୀଙ୍କୁ ଡାକୁଥାଏ । ଭକ୍ତିରେ ଆଖି ବୁଜି ଦେଇଥାଏ । ତାକୁ ଜଣାପଡ଼ିଲା, ଘରଟା ଯେପରି ଆଲୁଅ ହୋଇଯାଇଛି । ସେ ତ ଆଲୁଅ ଲଗାଇନାହିଁ; ଅନ୍ଧାର ଭିତରେ ବସିଛି । ଏତେ ତୋଫା ଆଲୁଅ କେଉଁଠୁ ଆସିଲା ? ସତକୁ ସତ ସେ ଆଖିମେଲି ଚାହିଁଦିଏ ତ ପରୀରାଣୀ କବାଟ ଠେଲି ଘର ଭିତରକୁ ପଶିଆସୁଛନ୍ତି । ଦେଖିବାକୁ କେଡ଼େ ସୁନ୍ଦର ! ଦେହରୁ ଖାଲି ଆଲୁଅ ଚାରିଆଡ଼କୁ ବିଛାଡ଼ି ହୋଇପଡୁଛି । ହେନେରୀ ତାଙ୍କର ପାଦତଳେ ଭକ୍ତିରେ ମୁଣ୍ଡ ଲଗାଇଲା ।

ପରୀରାଣୀ ସ୍ନେହରେ ହେନେରୀ ମୁଣ୍ଡରେ ହାତ ବୁଲାଇଦେଲେ । ତାକୁ କହିଲେ, "ତୁ ମୋତେ କାହିଁକି ଡାକିଲୁ ?"

ହେନେରୀ କହିଲା, ''ଆପଣ ମୋର ଏକମାତ୍ର ସହାୟ । ମୋ ମା'ଙ୍କୁ ଭଲ କରିଦିଅନ୍ତୁ ।''

ପରୀରାଣୀ ଟିକିଏ ମୁରୁକି ମୁରୁକି ହସିଲେ । ତା'ପରେ ଧୀରେ ଧୀରେ ହେନେରୀ ମା'ଙ୍କ ଖଟିଆ ପାଖକୁ ଯାଇ ତାଙ୍କ ଦେହକୁ ଆଉଁସି ଦେଲେ । ଡାକ୍ତରାଣୀଙ୍କ ପରି ଭଲଭାବରେ ପରୀକ୍ଷା କଲେ । ତା'ପରେ ପରୀରାଣୀ ହେନେରୀକୁ ଆଦରରେ ପାଖରେ ବସାଇ କହିଲେ, ''ବାବା, ତୋ ମା'ଙ୍କୁ ଭଲ କରିବା କ୍ଷମତା ମୋର ନାହିଁ; ମାତ୍ର ତୋତେ ମୁଁ ଗୋଟିଏ ଉପାୟ ବତାଇଦେବି । ତୁ ତାହା କରିପାରିଲେ ମା'ଙ୍କର ଜୀବନରକ୍ଷା ହୋଇଯିବ ।

ହେନେରୀ କହିଲା, ''ମୋ ମା'ଙ୍କ ପାଇଁ ମୁଁ ସବୁକିଛି କରିପାରିବି । ଆପଣ ଦୟାକରି କହନ୍ତୁ, ମୋତେ କ'ଣ କରିବାକୁ ହେବ ।''

ପରୀରାଣୀ କହିଲେ, ''ସେ କାର୍ଯ୍ୟଟି ଅତ୍ୟନ୍ତ କଷ୍ଟ । ତୋ ପରି ପିଲାଲୋକ ଉପରେ ମୋର ବିଶ୍ୱାସ ପାଉନାହିଁ ।''

ହେନେରୀ ଅତ୍ୟନ୍ତ ବିକଳ ହୋଇ କହିଲା, ''ଆପଣ ମୋତେ ବିଶ୍ୱାସ କରନ୍ତୁ, ମା'ଙ୍କ ପାଇଁ ମୁଁ ଯେକୌଣସି ଦୁଃଖ ସହିବାକୁ ପ୍ରସ୍ତୁତ ଅଛି ।''

ପରୀରାଣୀ ଖୁବ୍ ଖୁସି ହୋଇଗଲେ । ତାକୁ ଆଶୀର୍ବାଦ କଲେ; କହିଲେ, ''ଏଇ ଆଗରେ ଯେଉଁ ପାହାଡ଼ ଦେଖୁଛୁ, ତା'ରି ଉପରେ 'ଅମୃତଚେର' ଅଛି । ସେଠାକୁ ଯିବାପାଇଁ ହେଲେ ଖୁବ୍ ସାହସ ଏବଂ ଧୈର୍ଯ୍ୟ ଲୋଡ଼ା ହେବ । ପାହାଡ଼ର ତିଖରେ ପହଞ୍ଚିଲେ ମୋ'ରି ନାଁ କହି ସେଠାରେ ଡାକ୍ତରକୁ ଡାକିବୁ । ସେ ତୋତେ ଅମୃତଚେର ଦେବ ।''

ହେନେରୀ ଘଡ଼ିଏ ଭାବିଲା ଏବଂ ଯିବାପାଇଁ ଅଣ୍ଟା ଭିଡ଼ିଲା । ଯେଉଁ ପାହାଡ଼କୁ କେହି କେବେ ଚଢ଼ିନାହାନ୍ତି, ମା'ଙ୍କ ଜୀବନରକ୍ଷା ପାଇଁ ସେ ଅବଶ୍ୟ ଚଢ଼ିବ । ତେବେ ମା' ରହିବେ କିପରି ? ସେ ବିକଳ ହୋଇ କହିଲା, ''ପରୀରାଣୀ, ମୋ ମା'ଙ୍କୁ କିଏ ସେବା କରିବ ?''

ପରୀରାଣୀ କହିଲେ, ''ସେ ଚିନ୍ତା କରନାହିଁ । ତୁ ଆସିଲା ପର୍ଯ୍ୟନ୍ତ ମୁଁ ଅଛି ।''

ସାତବର୍ଷର ହେନେରୀ ପାହାଡ଼ ଆଡ଼କୁ ମୁହାଁଇଲା ।

ମାଆକୁ ବଞ୍ଚାଇବା ପାଇଁ ହେନେରୀର ଆଉ ଭୋକଶୋଷ ନ ଥାଏ । ଯେପରି ହେଉ, ପାହାଡ଼ ଚଢ଼ି ତାକୁ ଅମୃତଚେର ଆଣିବାକୁ ହେବ । ଚାଲି ଚାଲି ସାତ ଦିନ ସାତ ରାତି ଗଲାଣି, ତଥାପି ସେ ପାହାଡ଼ ପାଖରେ ପହଞ୍ଚି ପାରିନାହିଁ । ମାତ୍ର ତାକୁ ଜଣାଯାଉଥାଏ ପାହାଡ଼ ଯେପରି ତା'ର ଘରଠାରୁ ଅଳ୍ପ ବାଟରେ । ବାଟରେ ବଣ

ଭିତରେ ଗୋଟିଏ ଡାମରା କାଉ ଶିକାରୀ ଜାଲରେ ଛନ୍ଦି ହୋଇ କଷ୍ଟ ପାଉଥାଏ । ଶିକାରୀ ଆସି ପହଞ୍ଚିଗଲେ ତା'ର ପ୍ରାଣ ଗଲା । ହେନେରୀ ଜାଲ କାଟିଦେଇ ଡାମରାକୁଆକୁ ଉଡ଼ାଇଦେଲା । ଡାମରାକୁଆ ଖୁସି ହୋଇ କହିଲା, ''ତୁମେ ମୋର ଉପକାର କଲ । ସମୟ ଆସିଲେ ମୁଁ ତୁମକୁ ସାହାଯ୍ୟ କରିବି ।''

କୁଆଟାଏ କଥା କହୁଛି ଶୁଣି ହେନେରୀ ଆଚମ୍ୱିତ ହୋଇଗଲା । ପୁଣି ଆଗକୁ ବାଟ ଚାଲିଲା । ଦେଖିଲା ବଣଭିତରେ ଗୋଟିଏ କୁକୁଡ଼ାକୁ କୋକିଶିଆଳଟାଏ ଗୋଡ଼ାଉଛି—ଆଉ ଅଳ୍ପକରେ ଧରି ମାରିପକାଇବ । ହେନେରୀ କୁକୁଡ଼ାକୁ ଧରିଆଣି ନିଜ ବ୍ୟାଗ୍‌ରେ ଲୁଚାଇଦେଲା । କୋକିଶିଆଳ କୁକୁଡ଼ାକୁ ଖୋଜି ବଣଭିତରକୁ ଦଉଡ଼ିଗଲା । କୁକୁଡ଼ାର ଜୀବନରକ୍ଷା କରିଥିବାରୁ ସେ ଅବିକଳ ମଣିଷ ପରି କହିଲା, ''ତୁମର ଉପକାର ମୁଁ ସୁଝିଦେବି । ଭଗବାନ ତୁମର ମଙ୍ଗଳ କରିବେ ।''

କୁକୁଡ଼ା କଥା କହୁଛି ବୋଲି ହେନେରୀ ଆଉ ଆଶ୍ଚର୍ଯ୍ୟ ହେଲା ନାହିଁ । ହେନେରୀ ଆଉ କେତେ ବାଟ ଯାଇଛି, ଦେଖିଲା ଗୋଟିଏ ବେଙ୍ଗକୁ ସାପଟିଏ ଖାଇଦେବାକୁ ବସିଛି । ସେ ଟେକାଟିଏ ପକାଇ ସାପକୁ ଘଉଡ଼ିଦେଲା । ବେଙ୍ଗଟି ମଧ ପ୍ରାଣ ପାଇ ହେନେରୀ ଉପରେ ଅତ୍ୟନ୍ତ ଖୁସି ହେଲା । ସେ ମଣିଷ ପରି ତାକୁ କହିଲା, ''ତୁମ ଉପକାର ମୋର ମନେ ରହିଲା । ଦରକାର ବେଳେ ମୁଁ କାମରେ ଆସିବି ।''

ହେନେରୀ ଶେଷରେ ଯାଇ ଗୋଟିଏ ନଈକୂଳରେ ପହଞ୍ଚିଲା । ଦୁଇକୂଳ ଖାଇ ପାଣି ବହିଯାଉଥାଏ । ନଈଟା ଏତେ ଓସାର ଯେ ଆର କୂଳ ଦେଖାଯାଉନଥାଏ । ମନେ ହେଉଥାଏ, ସେ ଅବା ଗୋଟିଏ ସମୁଦ୍ରକୂଳରେ ପହଞ୍ଚିଯାଇଛି । ନଈ ପାରିହେବା ପାଇଁ କିଛି ଆଶା ନାହିଁ । ଯେତେ ଅନୁମାନ କଲା, ଘାଟ ନାହିଁ କି ପୋଲ ନାହିଁ । ନଈ ପାରି ନ ହେଲେ ପାହାଡ଼କୁ ଯିବା ଅତ୍ୟନ୍ତ ଅସମ୍ଭବ । କେବଳ ପରୀରାଣୀକୁ ମନେ ମନେ ସ୍ମରଣ କରୁଥାଏ ଏବଂ ମା' କଥା ମନେପକାଇ କାନ୍ଦିପକାଉଥାଏ ।

ଏତିକିବେଳେ କୁକୁଡ଼ାଟି ଆସି ପହଞ୍ଚିଗଲା । ସେ ତାକୁ କହିଲା, ''ତୁମ ପରୀର ଏଠାରେ ଅଧିକାର ଖାଟିବ ନାହିଁ । ମୋ ପିଠିରେ ବସ, ମୁଁ ନଈ ପାର କରିଦେବି ।''

ହେନେରୀ କୁକୁଡ଼ା ଉପରକୁ ଯିବ କି ନାହିଁ ଭାବୁଛି, ଦେଖିଲା ତାର ପିଠିଟା ଘୋଡ଼ା ପିଠି ପରି ଓସାର ହୋଇଯାଇଛି । ସେ ତାର ଚୂଳ ଧରି ଆନନ୍ଦରେ ପିଠି ଉପରେ ବସିପଡ଼ିଲା । କୁକୁଡ଼ା ଉଡ଼ି ଉଡ଼ି ଯାଉଥାଏ । ଏକୋଇଶଦିନ କାଳ କୁକୁଡ଼ା ଉଡ଼ି ଚାଲିଥାଏ; ତଥାପି ନଈ ସରୁ ନଥାଏ । ହେନେରୀକୁ ମଧ ଭୋକ, ଶୋଷ କି ନିଦ ନ ଥାଏ । କେବଳ ଚିନ୍ତା କିପରି ଅମୃତଚେର ଆଣି ମା'କୁ ଭଲ କରିବ ।

ସେ ଏହିପରି ଭାବୁଛି, ଜଣେ ବୁଢ଼ା ବାମନ ଆସି ତା' ଆଗରେ ଠିଆ ହୋଇଗଲା । ସେ ହେନେରୀକୁ ପଚାରିଲା, ''କିରେ ପିଲା ! ତୋର ତ ଭାରୀ

ସାହସ । ମୋ ରାଜ୍ୟକୁ ତୋତେ ଆସିବାକୁ କିଏ କହିଲା । ତୋର କଅଣ ଜୀବନକୁ ଆଶା ନାହିଁ କି ?''

ହେନେରୀ ହଠାତ୍ ଚମକି ପଡ଼ିଲା । ସେ ଭାବିଲା, ଏହି ବାମନ ବୁଢ଼ାଟି ବୋଧହୁଏ ପାହାଡ଼ରେ ଘର କରି ରହିଥିବା ଅସୁର ବୁଢ଼ା । ସେ ତ ତା'ର ମାଆପାଇଁ ଜୀବନକୁ ପାଣି ଛଡ଼ାଇଛି । ଆଉ ଡର କାହାକୁ !!

ସାହସ ସଞ୍ଚୟ କରି ହେନେରୀ କହିଲା, ''ମଉସା, ମୋର ନମସ୍କାର ଗ୍ରହଣ କର । ମୋର ବୋଉ ମରଣ ଶେଯରେ । ତାକୁ ରକ୍ଷା କରିବା ପାଇଁ ତୁମ ପାଖକୁ ଆସିଛି । ଅମୃତଚେର ନେଲେ ମୋର ବୋଉ ଜୀବନ ପାଇବ ।''

ବାମନ ବୁଢ଼ା ହେନେରୀର ମାତୃଭକ୍ତି ଦେଖି ଖୁବ୍ ସନ୍ତୋଷ ପ୍ରକାଶ କଲା । ସେ କହିଲା, ''ଆଚ୍ଛା ତୋ ଉପରେ ମୁଁ ଅତ୍ୟନ୍ତ ଖୁସି ହେଲି । ତୋତେ ଆଶୀର୍ବାଦ କରୁଛି, ତୁ ତୋ କାମରେ ସଫଳ ହୁଅ ।''ଏହା କହି ହେନେରୀକୁ ସେ ଗୋଟିଏ କାଠଘୋଡ଼ା ଦେଲା ଏବଂ ମନ୍ତ୍ରଟିଏ ଶିଖାଇଦେଲା । କହିଲା, ''ଏହି ମନ୍ତ୍ରଟି ପଢ଼ି କାଠଘୋଡ଼ାକୁ ଚାଲ ବୋଲି କହିଲେ ସେ ତୋତେ ନେଇ ପାହାଡ଼ ଉପରେ ପହଞ୍ଚାଇ ଦେବ । ସେଇଠି ଅମୃତଫଳର ଗଛ ଅଛି ।'' ଏତିକି କହି ବାମନ ବୁଢ଼ା ଉଭାନ ହୋଇଗଲା ।

ହେନେରୀ କାଠଘୋଡ଼ା ଉପରେ ବସି ଯେମିତି ମନ୍ତ୍ର ବୋଲି କହିଛି ପାହାଡ଼ ଉପରକୁ ଯାଅ, ପକ୍ଷୀପରି କାଠଘୋଡ଼ା ଶୂନ୍ୟରେ ଉଡ଼ି ଉଡ଼ି ଅଳ୍ପ ସମୟ ମଧ୍ୟରେ ଏତେ ଉଚ୍ଚ ପାହାଡ଼ ଉପରେ ପହଞ୍ଚାଇଦେଲା । କାଠଘୋଡ଼ାରୁ ଓହ୍ଲାଇପଡ଼ି ହେନେରୀ ଦେଖିଲା, ଚାରିଆଡ଼େ ଭୟଙ୍କର ଜଙ୍ଗଲ । ସାମାନ୍ୟ ଚଢ଼େଇଟିର ମଧ ସ୍ୱର-ଶବ୍ଦ ନାହିଁ । ତାକୁ ବଡ଼ ଏକା ଏକା ଲାଗିଲା । ସେ ଏବେ କଅଣ କରିବ ? କିପରି ଅମୃତ ଗଛର ଚେର ଖୋଜିପାଇବ ? ଭାବି ଭାବି କିଛି ଥଳକୂଳ ପାଇଲା ନାହିଁ । ଶେଷରେ ତାର ପରୀର କଥା ମନେପଡ଼ିଲା । ସେ ମନେ ମନେ ପରୀକୁ ସ୍ମରଣ କରିବାକୁ ଲାଗିଲା । ଏତିକିବେଳେ କିଏ ଯେପରି ତାର କାନରେ ଥିରି ଥିରି କହି ଦେଇଗଲା, ପାହାଡ଼ ରାଜ୍ୟର ବୈଦ୍ୟ ତୋତେ କେବଳ ଏ ଚେର ଖୋଜିଆଣି ଦେଇପାରିବ ।

ହେନେରୀ ସାହସ ସଞ୍ଚୟ କରି ପାଟି କରି ଡାକିଲା, ''ହେ ପାହାଡ଼ ରାଜ୍ୟର କବିରାଜ ! ମୋର ମା'କୁ ବଞ୍ଚାଇବା ପାଇଁ ଆପଣଙ୍କର ଆଶ୍ରୟ ଲୋଡ଼ିଛି । ମୋତେ ତୁରନ୍ତ ଅମୃତ ଗଛର ଚେର ଦିଅ ।''

ଏତିକିବେଳେ ଜଣେ ଦାଢ଼ିଆ ବାମନ ବୁଢ଼ା ସେଠାରେ ହାଜର ହୋଇଗଲା । ସେ ହସି ହସି ହେନେରୀକୁ ଆଶୀର୍ବାଦ କଲା—''ତୋର ମାତୃଭକ୍ତି ଯୋଗୁଁ ଏତେ ବିପଦପୂର୍ଣ୍ଣ ସ୍ଥାନକୁ ଆସି ପ୍ରାଣ ପାଇଲୁ । ହଉ ! ତୋତେ ମୁଁ ସାହାଯ୍ୟ କରିବି ।

ମାତ୍ର ସାବଧାନ ! ଅମୃତବେର ହାତଛଡ଼ା କରିବୁ ନାହିଁ । ଥରେ ହାତରୁ ଖସିଲେ ଆଉ ପାଇବୁ ନାହିଁ ।''

ଏହା କହି ସେ ଜଙ୍ଗଲରୁ ଖୋଜିଆଣି ଅମୃତବେର ଦେଲା । ହେନେରୀ ଅମୃତ୍‌ବେର ପାଇ ଏତେ ଖୁସି ହୋଇଗଲା ଯେ ମନେହେଲା ସେ ଯେପରି ଦଉଡ଼ିଯାଇ ମା' ପାଖରେ ପହଞ୍ଚିଯିବ । ମାତ୍ର ପାହାଡ଼ ଉପରୁ ତଳକୁ ଚାହିଁ ତାର ଆଖି ଟେକି ହୋଇଗଲା । ଏବେ ସେ ଯିବ କିପରି ? କେତେ ସମୟ ପରେ ତାର ମନେପଡ଼ିଲା ଯେ କାଠଘୋଡ଼ା ବାହାରେ ଠିଆହୋଇଛି । ସେ ତୁରନ୍ତ ଯାଇ କାଠଘୋଡ଼ାରେ ବସିପଡ଼ିଲା ଏବଂ ମନ୍ତ୍ର ପଢ଼ି ଘରକୁ ଯିବା ପାଇଁ କହିଲା ।

ଚାହୁଁ ଚାହୁଁ ଘୋଡ଼ାଟି ଆକାଶରେ ଉଡ଼ି ଉଡ଼ି ଆସି ହେନେରୀର ଘର ପାଖରେ ଠକ କରି ଠିଆ ହୋଇଗଲା ।

ପରୀରାଣୀ ଦୁଆରମୁହଁରେ ହସହସ ମୁହଁରେ ହେନେରୀକୁ ପାଛୋଟି ନେଇଗଲେ । ସେ ଆଦରରେ ତାର ମୁଣ୍ଡରେ ହାତ ବୁଲାଇବାକୁ ଲାଗିଲା—''ମାଆ ପାଇଁ କେତେ କଷ୍ଟ କଲୁ । ଆଉ ଚିନ୍ତା କଅଣ ! ଏଥର ମାଆକୁ ଅମୃତବେର ଛୁଆଁଇ ଦେ, ସବୁ ଠିକ୍ ହୋଇଯିବ ।''

ହେନେରୀ ଯେମିତି ମା' ଦେହ ମୁଣ୍ଡ ଚାରିଆଡ଼େ ଅମୃତ ବେର ଛୁଆଁଇ ଦେଇଛି, ସେ ନିଦରୁ ଉଠିଲାପରି ବସିପଡ଼ିଲା । ହେନେରୀର ଆନନ୍ଦ ଆଉ କିଏ ଦେଖେ । ମା' କେତେଦିନପରେ ଚେତା ପାଇ ପୁଅକୁ ଗେଲ କରୁଥାଏ । ହେନେରୀ କହିଲା, ''ମାଆ, ତୁ ଆଉ ଜୀବନ ପାଇ ନ ଥାନ୍ତୁ । ଏଇ ପରୀରାଣୀ ଯୋଗୁ ତୋର ପ୍ରାଣ ବଞ୍ଚିଗଲା ।''

ପରୀରାଣୀ ମା'କୁ ସବୁକଥା କହିଲା । ହେନେରୀ ପରି ପୁଅ ଜନ୍ମକରି କୋଉ ମାଆ ଗର୍ବ ନ କରିବ । ପରୀରାଣୀର ଆଶୀର୍ବାଦରେ ହେନେରୀର ସମସ୍ତ ଅଭାବ ଦୂର ହୋଇଗଲା ।

ସେମାନେ ସୁଖରେ ଘରଦ୍ୱାର କରି ରହିଲେ ।

ଓଡ଼ିଆ

# ରଜା ଝିଅ ଓ ପରୀ



ସେ କାଳରେ ଫ୍ରାନ୍ସରେ ଜଣେ ରାଜା ରାଜୁତି କରୁଥିଲେ । ବହୁକାଳଯାଏ ରାଣୀଙ୍କର କିଛି ସନ୍ତାନ ହେଲା ନାହିଁ । ରାଜାରାଣୀ ବଡ଼ ମନ ଦୁଃଖରେ ଥାଆନ୍ତି । କେତେ ଦିଅଁ ଦେବତା ଡାକିଲା ପରେ ରାଣୀଙ୍କର ଚନ୍ଦ୍ରଉଦିଆ ପରି ଦୁଇଟି ଢାଆଁଳା ଝିଅ ହେଲେ । ସେ ଦୁହେଁ ଦେଖିବାକୁ ଭାରି ସୁନ୍ଦର । ଦୁଇଜଣଙ୍କର ନାଁ ଦିଆହେଲା 'ଗୋଲାପ' ଆଉ 'ହେନା' । ତିନିବର୍ଷ ପରେ ରାଣୀଙ୍କର ଆଉ ଗୋଟିଏ ଝିଅ ହେଲା । ତାର ନାଁ ଦିଆଗଲା 'ରୋଜି' । କାହିଁକି କେଜାଣି ଜନମବେଳୁ ରାଜାରାଣୀ ଏ ଝିଅଟିକୁ ସୁଖ ପାଇଲେ ନାହିଁ । ତାକୁ ସାଙ୍ଗେ ସାଙ୍ଗେ ଦୂର ମଫସଲରେ ଗୋଟିଏ ଧାଇମା ପାଖରେ ରଖାଇଦେଲେ । ଚାହୁଁ ଚାହୁଁ ପନ୍ଦରବର୍ଷ ଅତୀତ ହୋଇଗଲା । ଦିନେ ହେଲେ ରାଜାରାଣୀ ରୋଜିକୁ ପାଖକୁ ନେଇନାହାନ୍ତି କି ତାକୁ ଦେଖିବାକୁ ଇଚ୍ଛା କରିନାହାନ୍ତି । ଦୁଃଖିନୀ ଧାଇମା କୋଳରେ ରୋଜି ହସଖୁସିରେ କାଳ କାଟୁଥାଏ । ତାର କପାଳକୁ ସ୍ୱର୍ଗର ପରୀଟିଏ ଆସି ଧରମ ମା' ହୋଇଥାଏ । ସେ କାୟା ସାଙ୍ଗରେ ଛାୟା ପରି ଗୋଡ଼େ ଗୋଡ଼େ ଜଗି ଝିଅଟିକୁ ମଣିଷ କରିବାରେ ଲାଗି ପଡ଼ିଥାଏ ।

ବାପା ବୋଉଙ୍କ ପାଖରେ ଗେହ୍ଲାରେ ବଢ଼ି 'ଗୋଲାପ' ଆଉ 'ହେନା' ଦୁଇ ଭଉଣୀ ଅତ୍ୟନ୍ତ ଗର୍ବରେ ଉଦ୍ଧତ ହୋଇପଡ଼ିଥାଆନ୍ତି । ସେମାନେ କାହାରି ସୁଖ ସହିପାରନ୍ତି ନାହିଁ । ଓଲଟି ଅନ୍ୟମାନଙ୍କର କୁତ୍ସାରଟନା କରିବା ସେମାନଙ୍କର ଯେପରି ଏକ ସଉକ ହୋଇପଡ଼ିଥାଏ ।

ତେଣେ ରୋଜି କିନ୍ତୁ 'ପରୀ ମା'ର ହେପାଜତରେ ଖଣ୍ଡା ଖେଳଠାରୁ ଘୋଡ଼ା ଚଢ଼ାଯାଏ ସବୁ ବିଦ୍ୟା ହାସଲ କରିସାରିଥାଏ । କେତେ ଶାସ୍ତ୍ର ପୁରାଣ ପଢ଼ି ଦିନକୁ

ଦିନ ଗୁଣର ହୋଇ ଉଠୁଥାଏ । ଏ କଥା ତାର ଦୁଇ ଭଉଣୀ ଏବଂ ରାଜାରାଣୀ କାହିଁକି ଅବା ଜାଣିବେ ! ସେମାନେ ତ ତାକୁ ମଫସଲି ବୋଲି ଘୃଣାରେ ଆଡ଼େଇ ଦେଇଛନ୍ତି । ତାକୁ ଆପଣାର ବୋଲି ପରିଚୟ ଦେବାକୁ ମଧ୍ୟ ଅରାଜି ହେଉଥାଆନ୍ତି ।

ଏହିପରି ଭାବରେ ପନ୍ଦର ବର୍ଷ ଚାଲିଗଲା । ବଡ଼ ଦୁଇ ଭଉଣୀଙ୍କର ବାହାଘର ପାଇଁ ରାଜା କେତେ ରାଇଜର ରାଜକୁମାରମାନଙ୍କୁ ସ୍ୱୟମ୍ବର ପାଇଁ ନିମନ୍ତ୍ରଣ କରିଥାଆନ୍ତି । ରାଜ୍ୟସାରା ନାନାପ୍ରକାର ସଜାସଜି ଚାଲିଥାଏ । ଚାରିଆଡ଼େ ଭୋଜିଭାତ ହେଉଥାଏ । ରାଜାଙ୍କର ଜଣେ ଦୂତ ଯାଇ ଗାଁରେ ପହଞ୍ଚିଲା । ରୋଜିକୁ ଭଉଣୀମାନଙ୍କର ବାହାଘରରେ ଯୋଗ ଦେବାପାଇଁ ରାଜା ନିମନ୍ତ୍ରଣ ପଠାଇଥିଲେ; କିନ୍ତୁ କିଛି ପୋଷାକ ଦେଇ ନ ଥିଲେ । ତେଣୁ ଧାଈମା'ର ଇଚ୍ଛା ରୋଜି ନ ଯାଉ । କ'ଣ ଗୋଟାଏ ଆଳ କରି ରହିଯାଉ । ଏତିକିବେଳେ ପରୀରାଣୀ ଆସି ପହଞ୍ଚିଲେ । ସେ ସବୁ ଶୁଣି କହିଲେ, ରୋଜି ବାହାଘରରେ ଯୋଗଦେବ । ତା' ପାଇଁ ମୁଁ ସମସ୍ତ ବ୍ୟବସ୍ଥା କରିଦେବି । ସେ ରୋଜିର ଲୁଗା ଟ୍ରଙ୍କରେ କିଛି ମନ୍ତ୍ରପାଣି ଛିଞ୍ଚିଦେଲେ । ତାକୁ କହିଲେ, ଏଥିରେ ତିନିଦିନ ପାଇଁ ଯଥେଷ୍ଟ ମୂଲ୍ୟବାନ ଶାଢ଼ୀ ଆଉ ଅଳଙ୍କାର ଅଛି । ତୁ ମନ ଖୁସିରେ ବାହାଘରରେ ଯୋଗଦେବୁ । କୌଣସି ବିଷୟରେ ମନ ମାରିଦେବୁ ନାହିଁ । ତୋ ପାଖେ ପାଖେ ମୁଁ ସବୁବେଳେ ରହିଛି । ତୋର କେହି କିଛି କ୍ଷତି କରିପାରିବେ ନାହିଁ ।

ରାଜା ଘର ଘୋଡ଼ାଗାଡ଼ିରେ ରୋଜି ଯାଇ ରାଜନଅରରେ ପହଞ୍ଚିଲା । କେତେ ଆଶା କରୁଥିଲା ତାର ବାପା, ବୋଉ ଆଉ ଭଉଣୀମାନଙ୍କୁ ମନ ପୂରାଇ ଦେଖିବ ଏବଂ ଗପସପ କରିବ; କିନ୍ତୁ ସିଂହଦ୍ୱାରରେ ଗାଡ଼ି ରହିଲା ନାହିଁ କି ତାକୁ କେହି ପାଛୋଟି ନେଲେ ନାହିଁ ।

ରାଜାଘର ବାଡ଼ି ଭିତରେ ଗୋଟିଏ ପୁରୁଣା ଘରେ ରୋଜିକୁ ରହିବା ପାଇଁ କୁହାଗଲା । ସେ ପଚାରିଲା, ''ରାଜାରାଣୀଙ୍କୁ ସାକ୍ଷାତ କରନ୍ତି ନାହିଁ ?'' ଦାସୀମାନେ ରୋଜି ପାଇଁ ବିକଳ ହେଉଥାଆନ୍ତି । ଜନ୍ମକଲା ବାପ ମା' ହୋଇ ରାଜାରାଣୀ ସାନଝିଅକୁ ପାଖରେ ପୂରାଉ ନାହାନ୍ତି । ସେମାନେ କହିଲେ, 'ସାନଜେମା', ବ୍ୟସ୍ତ ହୁଅନାହିଁ । ରାତିରେ ଭୋଜିବେଳେ ରାଜାରାଣୀଙ୍କୁ ସାକ୍ଷାତ ମିଳିବ ।

ରୋଜିର ସ୍ୱଭାବ ଅତି ଭଲ । ସେ କାହାରି ବିଷୟରେ କିଛି ମନ୍ଦ ଚିନ୍ତା କରିପାରେ ନାହିଁ । ରାତିରେ ଭୋଜି ସଭାରେ ଯୋଗ ଦେବାପାଇଁ ଡକରା ଆସିଲା । ସେ ପରୀରାଣୀ ଦେଇଥିବା ପୋଷାକ ଆଉ ଅଳଙ୍କାର କାଢ଼ି ପିନ୍ଧିଲା । ଏପରି ମୂଲ୍ୟବାନ ଶାଢ଼ୀ ଓ ଅଳଙ୍କାର କେହି କେବେ ଦେଖି ନ ଥିଲେ । ସମସ୍ତଙ୍କର ଆଖି ଝଲସି ଯାଉଥାଏ । ରୋଜି ଯେତେବେଳେ ଯାଇ ସଭାଗୃହରେ ପହଞ୍ଚିଲା, ସବୁ ରାଜକୁମାରଙ୍କ ଆଖି ତାରି ଉପରେ ଲାଖି ରହିଲା । ରାଜାରାଣୀ ଭାବିଲେ କେଉଁ ରାଇଜର ଜଣେ

ରାଜାଝିଅ ବୋଧହୁଏ ସ୍ୱୟମ୍ବର ଦେଖିବାପାଇଁ ଚାଲିଆସିଛି । ରୋଜି ରାଜାରାଣୀଙ୍କୁ ନମସ୍କାର କଲାବେଳେ ସେମାନେ ପରିଚୟ ଜାଣି ଆଶ୍ଚର୍ଯ୍ୟ ହୋଇଗଲେ । ମଫସଲି ଝିଅଟା ପୁଣି ଏଡ଼ିକି ସୁନ୍ଦରୀ ! ରାଜା ରାଣୀ ଏବଂ ଦୁଇ ଝିଅଙ୍କର ଈର୍ଷାରେ ଦେହ ସହୁ ନ ଥାଏ । ସେମାନେ ତାକୁ ପାଖରେ ବସାଇଲେ ନାହିଁ । ଏପରି ଅବହେଳା ସତ୍ତ୍ୱେ ରୋଜି ହସି ହସି ସମସ୍ତଙ୍କ ସହିତ କଥା ହେଉଥାଏ ।

· ରାଜକୁମାରମାନଙ୍କୁ ସୁଖୀ କରିବା ପାଇଁ ବଡ଼ ଦୁଇଭଉଣୀ ଗୀତ ଗାଇଲେ । ସମସ୍ତଙ୍କ ସହିତ ରୋଜି ମଧ୍ୟ ଆନନ୍ଦରେ ତାଳି ମାରୁଥାଏ । ଗୀତ ଗାଇ ଜାଣି ନଥିବ ଭାବି ଅପମାନିତ କରିବାପାଇଁ ରାଜାରାଣୀ ରୋଜିକୁ ଗାଇବା ପାଇଁ କହିଲେ । ରୋଜି ବୀଣା ଧରି ଏପରି ମଧୁର ଗୀତଟିଏ ଗାଇଲା ଯେ, ରାଜକୁମାରମାନେ ଚିତ୍ରପିତୁଳା ପରି ରହିଗଲେ । ସମସ୍ତେ କହିଲେ, ଏପରି ଗୀତ କେହି ଆଗରୁ ଶୁଣି ନ ଥିଲେ । ତାପରେ ବଡ଼ ଦୁଇଭଉଣୀ ରାଜକୁମାରମାନଙ୍କୁ ନାଚ ଦେଖାଇଲେ । ସେମାନେ ଦଶବର୍ଷ ହେଲା ଏହି ନାଚ ଶିଖି ଆସୁଥିଲେ । ସମସ୍ତେ ଧନ୍ୟବାଦ ଜଣାଇଲେ । ରୋଜିକୁ ଅପମାନ ଦେବାପାଇଁ ରାଜାରାଣୀ ତାକୁ ମଧ୍ୟ ନାଚିବାକୁ କହିଲେ । ପରୀରାଣୀ ଯାହାକୁ ଶିକ୍ଷା ଦେଇଛି ତାର କେଉଁ କଥାକୁ ଡର । ରୋଜି ନାଚିଲାବେଳେ ରାଜକୁମାରମାନଙ୍କର ଆଖି ଖୋସି ହୋଇଗଲା । ରାଜାରାଣୀ ଓ ଦୁଇଭଉଣୀ ଭାବିପାରିଲେ ନାହିଁ ସେହି ଗାଉଁଲି ଝିଅଟା ଏପରି ନାଚ କେଉଁଠୁ ଶିଖିଲା ? ଫ୍ରାନ୍ସର ସବୁଠାରୁ ସୁନ୍ଦର ରାଜକୁମାର 'ସାମ୍‌ସନ୍' ମନେ ମନେ ଠିକ୍ କରିଥାଏ ତାକୁ ବିଭା ହେବ ବୋଲି । ବଡ଼ ଦୁଇଭଉଣୀଙ୍କର ଗର୍ବ, ଈର୍ଷା, ଅହଙ୍କାର ହେତୁ କୌଣସି ରାଜକୁମାର ସେମାନଙ୍କୁ ବିବାହ କରିବା ପାଇଁ ଆଗେଇ ଆସିଲେ ନାହିଁ ।

ଶେଷରେ ରାଜାରାଣୀ ଏକ ଚକ୍ରାନ୍ତ କଲେ ରୋଜିକୁ ମାରିଦେବା ପାଇଁ । ସେମାନେ ଏକ ମାରଣା ଘୋଡ଼ା ଆଣି ଠିଆ କରିଦେଲେ । ଆଦେଶ ଦେଲେ ରୋଜି ତାରି ଉପରେ ଚଢ଼ି ସହର ଚାରିପଟେ ବୁଲିଆସିବ । ରାଜକୁମାରୀ ରୋଜି ଉପରେ ସେତେବେଳକୁ ସମସ୍ତଙ୍କର ସ୍ନେହ ଅଜାଡ଼ି ହୋଇ ପଡୁଥାଏ । ଜଣେ ଆସି ଚୁପ୍‌କରି ତାକୁ ସାବଧାନ କରାଇଦେଲା ମାରଣା ଘୋଡ଼ାରେ ନ ଚଢ଼ିବା ପାଇଁ । ମାତ୍ର ପରୀରାଣୀ ତା'ର କାନରେ ଶୂନ୍ୟରୁ କହିଦେଇଗଲା, "ତୋର କିଛି ହେବ ନାହିଁ । ତୁ ଭୟ ନ କରି ଘୋଡ଼ାରେ ଚଢ଼ିବୁ । ମାତ୍ର ରାଜନଅରକୁ ନ ଫେରି ସିଧା ରାଜକୁମାର ସାମ୍‌ସନ୍ ରାଜ୍ୟକୁ ଚାଲିଯିବୁ । ରାଜକୁମାର ସାମ୍‌ସନ୍ ମଧ୍ୟ ତୋତେ ଆଉ ଏକ ଘୋଡ଼ାରେ ଅନୁସରଣ କରୁଥିବ । ସେଇ ରାଜ୍ୟରେ ତୁ ସୁଖରେ ରହିବୁ ।"

ରୋଜି ଅବା ଆଉ କାହିଁକି ଡରିବ ? ନିର୍ଦ୍ଦେଶ ପାଇଲା ମାତ୍ରକେ ସେ ଘୋଡ଼ା ଉପରକୁ ଡେଇଁ ପଡ଼ିଲା । ସମସ୍ତ ବିଚାରିଲେ ଏଥର ରୋଜିର ଆଉ ରକ୍ଷା ନାହିଁ । ଘୋଡ଼ା ପବନ ବେଗରେ ଦଉଡୁଥାଏ । ରାଜକୁମାର ସାମ୍‌ସନ୍ କି ଆଉ ଥୟ ଧରେ ?

ସେ ମଧ୍ୟ ଆଉ ଗୋଟିଏ ଘୋଡ଼ାରେ ରୋଜିର ପିଛା କଲା । ଦଉଡ଼ି ଦଉଡ଼ି ମାରଣା ଘୋଡ଼ା ଯେତେ ଚେଷ୍ଟା କରୁଥାଏ ରୋଜିକୁ ଫିଙ୍ଗିଦେବ ବୋଲି ପରୀରାଣୀ ଯୋଗୁ ତାହା ସମ୍ଭବ ହେଉନଥାଏ । ଶେଷରେ ଗୋଟିଏ ଖାଲରେ ମାରଣା ଘୋଡ଼ାଟି ପଡ଼ି ମରିଗଲା । ପରୀରାଣୀ ଯୋଗୁ ରୋଜି ରକ୍ଷା ପାଇଗଲା । ଶେଷରେ ସାମ୍ସନ୍ ଓ ରୋଜି ନିଜ ରାଜ୍ୟକୁ ଯାଇ ବାହା ହୋଇ ସୁଖରେ ରହିଲେ ।

ପରୀରାଣୀ ସେମାନଙ୍କୁ ଆଶୀର୍ବାଦ କଲେ । ଏଣେ ଖରାପ ସ୍ୱଭାବ ପାଇଁ ରାଜା ରାଣୀ ଏବଂ ତାଙ୍କର ଦୁଇ ବଡ଼ଝିଅକୁ ପରୀରାଣୀ ସାପରେ ପରିଣତ କରିଦେଲେ । ସେମାନେ କାନ୍ଦି କାନ୍ଦି ଜଙ୍ଗଲକୁ ପଳାଇଗଲେ ।



# ଜଟିଆ ରାଜକୁମାର



ଫ୍ରାନ୍‌ସ ରାଜ୍ୟରେ ଅତି ପ୍ରାଚୀନ କାଳରେ ଜଣେ ରାଣୀ ଥିଲେ । ଅନେକ ଦିନ ପରେ ତାଙ୍କର ପୁଅଟିଏ ହେଲା । ରାଣୀଙ୍କର ଆନନ୍ଦ କହିଲେ ନ ସରେ । ମାତ୍ର ସେ ଯେତେବେଳେ ପୁଅଟିକୁ ଦେଖିଲେ, ଆଖିରେ ତାଙ୍କର ଲୁହ ଜମିଗଲା । ଏତେକାଳ ପରେ ତାଙ୍କୁ ଭଗବାନ ପୁଅଟିଏ ଦେଲେ, ସେ ପୁଣି ଏଡ଼ିକି ଅସୁନ୍ଦର ! ତାର ଅପରିଛନିଆ ବିକଟାଳ ମୁହଁକୁ ସେ ଅନାଇ ପାରିଲେ ନାହିଁ । ଭଗବାନଙ୍କୁ ଡାକିଲେ—ପ୍ରଭୁ ! ତୁମେ ଏ କଅଣ କଲ ? ରଜାଘରେ ପୁଣି ଏମିତି ଅଲକ୍ଷଣିଆ ପୁଅ ! ଜନ୍ମବେଳରୁ ତାର ମୁଣ୍ଡଟା ବଡ଼ ଏବଂ ମୁଣ୍ଡରେ ଗୋଟାଏ ଜଟ ।

ରାଣୀଙ୍କର ଦୁଃଖ ସହି ନ ପାରି ସେଠାରେ ଜଣେ ପରୀ ଆସି ପହଞ୍ଚିଲା । ରାଣୀ ପରୀ ପାଖରେ ବହୁତ ପ୍ରାର୍ଥନା କଲେ । ପରୀ କହିଲା, ''ରାଣୀ ! ତୁମେ ପୁଅର ଅସୁନ୍ଦର ରୂପ ଦେଖି ବ୍ୟସ୍ତ ହୁଅନାହିଁ । ତୁମ ପୁଅ ରୂପରେ ଅସୁନ୍ଦର ହେଲେ କ'ଣ ହେବ, ତାପରି ଗୁଣର ଆଉ କେହି ହେବେ ନାହିଁ । ସେ ଭାରି ବୁଦ୍ଧିମାନ ଓ ଚତୁର ହେବ । ପଣ୍ଡିତ ପଣିଆରେ ରାଜ୍ୟରେ ତା'ସହିତ କେହି ସମାନ ହେବେନାହିଁ । କେବଳ ସେତିକି ନୁହେଁ, ସେ ଯାହାକୁ ଭଲ ପାଇବ, ସେ ବି ସେମିତି ଚତୁର ଓ ବୁଦ୍ଧିମାନ ହେବ ।''

ଏଇ ଘଟଣାର ସାତବର୍ଷ ପରେ ପାଖ ରାଜ୍ୟର ରାଣୀଙ୍କର ଦୁଇଟି ଜାଆଁଳା ଝିଅ ଜନ୍ମ ହେଲେ । ବଡ଼ଝିଅଟି ଭାରୀ ସୁନ୍ଦରୀ, ଆଉ ସାନ ଝିଅଟି ଅସୁନ୍ଦରୀ ଥିଲା । ଏତିକିବେଳେ ସେଠାରେ ସ୍ୱର୍ଗର ପରୀଟିଏ ଆସି ଉପସ୍ଥିତ ହେଲା । ସେ ରାଣୀଙ୍କୁ କହିଲା,

''ତୁମର ସୁନ୍ଦରୀ ଝିଅଟି ଅତ୍ୟନ୍ତ ବୋକୀ ହେବ । ସାନଝିଅଟି ଅସୁନ୍ଦରୀ ହେଲେ କ'ଣ ହେବ, ତା' ପରି ବୁଦ୍ଧିମତୀ ଆଉ କେହି ହେବେ ନାହିଁ ।''

ଚନ୍ଦ୍ରଉଦିଆ ପରି ରାଜପୁରୀରେ ଦୁଇ ଝିଅ ବଢ଼ିବାକୁ ଲାଗିଲେ । ପ୍ରଥମ ଝିଅର ସୁନ୍ଦର ପଣରେ ସମସ୍ତେ ଖୁସି ହେଲେ; କିନ୍ତୁ ଅଳ୍ପଦିନ ମଧ୍ୟରେ ସମସ୍ତେ ଜାଣିଗଲେ, ସେ ଗୋଟିଏ ବୋକୀ ।

ପାଠ ଘରେ ତାର ତାଲା ପଡ଼ିଲା । ସେ କିଛି ମନେରଖି ପାରିଲା ନାହିଁ । ପାଣି ପିଇବାକୁ ଗଲେ କାଚଗ୍ଲାସ୍ ଭାଙ୍ଗିପକାଏ, ଖାଇବସିଲେ କିଛି ଠିକଣା ରହେନାହିଁ । ରାଜାରାଣୀ ବଡ଼ ଚିନ୍ତିତ ହୋଇପଡ଼ିଲେ । ଏପରି ଝିଅକୁ ନେଇ କ'ଣ କରିବେ ? ସେ କିପରି ଅବା ସଂସାରରେ ଚଳିବ ? ତାକୁ କେହି ଭଲ ପାଇଲେ ନାହିଁ, ତା' ପାଖରେ କେହି ବସିଲେ ନାହିଁ ।

କିନ୍ତୁ ଆର ଝିଅଟି ଅସୁନ୍ଦରୀ ବୋଲି ପ୍ରଥମେ ତାକୁ କେହି ଆଦର କରୁନଥିଲେ; ମାତ୍ର ତାର ଚତୁରୀ ପଣରେ ସମସ୍ତେ ଅଳ୍ପଦିନରେ ଖୁସି ହୋଇଗଲେ । ସେ ବଡ଼ ହେଲା । ପରେ ରାଜା ନିଜେ ରାଜକାର୍ଯ୍ୟରେ ତାର ପରାମର୍ଶ ଲୋଡ଼ିଲେ । ଚାରିଆଡ଼େ ସାନ ଜେମାଙ୍କର ପ୍ରଶଂସା ଶୁଣିବାକୁ ମିଳିଲା ।

ବଡ଼ଜେମା ଅନେକ ଦିନଯାଏଁ ବୁଝିପାରୁ ନଥିଲା ଯେ ତାକୁ ଘରେ ବାହାରେ କେହି ଆଦର କରୁନାହାନ୍ତି । ଶେଷରେ ସେ ସବୁକଥା ଜାଣିପାରିଲା ।

ସେ ଦିନେ ମନ ଦୁଃଖରେ ରାଜନଅର ପାଖ ଜଙ୍ଗଲରେ ଯାଇ ଗୋଟିଏ ଗଛ ମୂଳରେ ପହଞ୍ଚିଲା । ଆଖିରୁ ତାର ଲୁହ ବୋହିଯାଉଥାଏ । ଏତିକିବେଳେ ପାଖ ରାଜ୍ୟର ଜଟିଆ ରାଜକୁମାର ସେଠାରେ ଆସି ଉପସ୍ଥିତ ହେଲା । ଜଟିଆ ରାଜକୁମାର ଅସୁନ୍ଦର ହେଲେ କ'ଣ ହେବ, ବୁଦ୍ଧି ଓ ଚତୁର ପଣରେ ତାର ନାମ ଚାରିଆଡ଼େ ଡାକ ପଡ଼ିଥାଏ । ପୁଅ ଉପରେ ରାଜ୍ୟ ଦାୟିତ୍ୱ ଦେଇ ବୁଢ଼ାରାଜା ଆରାମ କରୁଥାଆନ୍ତି । ରାଣୀଙ୍କର କେବଳ ଗୋଟିଏ ଚିନ୍ତା, କିପରି ସୁନ୍ଦରୀ ବୋହୂଟିଏ ଘରକୁ ଆଣିବେ; ମାତ୍ର ରାଜକୁମାରଙ୍କ ରୂପକୁ ଦେଖି କେଉଁ ସୁନ୍ଦରୀ ରାଜକୁମାରୀ ଅବା ବାହା ହବାକୁ ରାଜି ହେବ ! ଏଥିପାଇଁ ରାଜା ରାଣୀ ବଡ଼ ଦୁଃଖରେ ଥାଆନ୍ତି ।

ଯାହାହେଉ ସେଦିନ ଜଙ୍ଗଲରେ ଜଟିଆ ରାଜକୁମାର ଗଛମୂଳେ ସୁନ୍ଦରୀ ରାଜକୁମାରୀକୁ ଦେଖି ମନେ ମନେ ଖୁସି ହୋଇଗଲା । ପାଖକୁ ଯାଇ କହିଲା, 'ରାଜକୁମାରୀ, ତୁମେ କାନ୍ଦୁଛ କାହିଁକି ?'

ଏତେଦିନ ପରେ ରାଜକୁମାରୀ ତା ପାଇଁ ଜଣକର ସହାନୁଭୂତିର ପଦିଏ କଥା ଶୁଣିଲା । ତାର ଆଖିରୁ ଝର ଝର ହୋଇ ଲୁହ ବହି ଆସିଲା । ସେ କହିଲା,

''ମୋର ସୁନ୍ଦର ପଣ ହିଁ ମୋତେ କାଳ ହୋଇଛି । ସେତିକି ଛଡ଼ା ମୋର ଆଉ କିଛି ନାହିଁ । ମୁଁ ବୋକିଟାଏ ବୋଲି ମୋତେ କେହି ଆଦର କରୁ ନାହାନ୍ତି । ମୋ ହାତରେ ପାଠ ହେଉ ନାହିଁ କି ମୋର କିଛି ମନେ ରହୁନାହିଁ ।

ରାଜକୁମାର କହିଲା, ''ରାଜକୁମାରୀ, ତୁମେ ସତ୍ୟ କର । ଆଜକୁ ଠିକ୍ ବର୍ଷକ ପରେ ଯଦି ତୁମେ ମୋତେ ବିବାହ କରିବ, ତା ହେଲେ ତୁମର ବୋକାପଣିଆ ଚାଲିଯିବ ।''

ଏତିକି କହି ରାଜକୁମାର ତା ରାଜ୍ୟକୁ ଫେରିଗଲା । ରାଜକୁମାରୀ ଏଣେ ରାଜନବରକୁ ଫେରି ଆସିଲା । ସେହି ମୁହୂର୍ତ୍ତରୁ କ'ଣ ହେଲା କେଜାଣି, ରାଜକୁମାରୀର ମନରେ ଆସିଲା ଅନେକ ପରିବର୍ତ୍ତନ । ତାର ବୋକାପଣିଆ ଚାଲିଗଲା । ସେ ସବୁକଥା ଠିକ୍ ଠିକ୍ ବୁଝିପାରିଲା । ପାଠ ବି ମନେ ରହିଲା ।

ଦାସ ଦାସୀ, ରାଜା ରାଣୀ ସମସ୍ତେ ଆଶ୍ଚର୍ଯ୍ୟ ମଣିଲେ ମଧ୍ୟ ଅତ୍ୟନ୍ତ ସୁଖୀ ହେଲେ ।

ଏଣିକି ବଡ଼ ଜେମାଙ୍କର ରୂପ ସହିତ ଗୁଣର ମଧ୍ୟ ଆଦର ହେଲା । ପାଖଆଖର ବହୁ ରାଜକୁମାର ବଡ଼ ଜେମାକୁ ବିବାହ କରିବା ପାଇଁ ପ୍ରସ୍ତାବ କଲେ । ମାତ୍ର ବଡ଼ଜେମା କାହାରିକୁ ବାହା ହେବାପାଇଁ ରାଜି ହେଲେ ନାହିଁ ।

ଚାହୁଁ ଚାହୁଁ ବରଷଟିଏ ବିତିଗଲା । ସେଦିନ ରାଜକୁମାରୀ ରାଜନବର ପାଖ ଜଙ୍ଗଲକୁ ବୁଲି ଯାଇଥାଏ । ସେ ସେଠାରେ ଦେଖିବାକୁ ପାଇଲା ବହୁ ଲୋକଙ୍କର ସମାଗମ ହୋଇଛି । ଚାରିଆଡ଼େ ତମ୍ବୁ ଟଣା ହୋଇଛି । କେତେ ଘୋଡ଼ାହାତୀ ସୈନ୍ୟ-ସାମନ୍ତ ଅପେକ୍ଷା କରିଛନ୍ତି । ଭୋଜିଭାତ ଧୁମ୍‌ଧାମ୍ ଚାଲିଛି । ପାଖକୁ ଯାଇ ସେ ପଚାରି ବୁଝିଲା, ଜଟିଆ ରାଜକୁମାରଙ୍କର ବାହାଘର ହେବ । ସେଥିପାଇଁ ଏ ଉତ୍ସବ ଚାଲିଛି ।

ଏତିକିବେଳେ ଜଟିଆ ରାଜକୁମାର ତମ୍ବୁ ମଧ୍ୟରୁ ହସି ହସି ବାହାରକୁ ଆସିଲା ଏବଂ ରାଜକୁମାରୀଙ୍କୁ ଅଭିନନ୍ଦନ ଜଣାଇଲା । ରାଜକୁମାରୀ ଏପରି ଅସୁନ୍ଦର ମଣିଷଟାକୁ ଦେଖି କପାଳରେ ଆଖିକୁ ଖୋସିଦେଲା । ଛି, ଛି, ମଣିଷ ପୁଣି ଏଡ଼ିକି କୁରୂପ ହୋଇ ପାରନ୍ତି !

ଜଟିଆ ରାଜକୁମାର ରାଜକୁମାରୀଙ୍କୁ ମନେ ପକାଇ ଦେଲା ବରଷକ ତଳର କଥା । ସେ ତାକୁ ବୁଦ୍ଧି ଏବଂ ଚତୁରପଣିଆ ଦେଇଥିଲା । ତାରି ବଦଳରେ ସେ ବାହାହେବ ବୋଲି ମଧ୍ୟ ପ୍ରତିଶ୍ରୁତି ଦେଇଥିଲା । ରାଜକୁମାରୀ କହିଲା, ''ସେତେବେଳେ ମୋର ବୁଦ୍ଧି ନଥିଲା; ତେଣୁ ବାହାହବା ପାଇଁ ହଁ କରିଥିଲି । ଏବେ ତୁମେ କିପରି କହୁଛ, ତୁମ ରୂପର ମଣିଷକୁ ମୁଁ ବିବାହ କରିବି ।''

ଜଟିଆ ରାଜକୁମାର ଏକଥା ଶୁଣି କହିଲା—'ରାଜକୁମାରୀ, ସଂସାରରେ ରୂପଟା ତ ବଡ଼ କଥା କୁହେଁ । ଦିନେ ତୁମର ମଧ୍ୟ ରୂପ ଥିଲା । ମାତ୍ର ବୁଦ୍ଧି ନଥିବାରୁ ତୁମେ ଭାଙ୍ଗି ପଡୁଥିଲ । ଅପମାନିତ ହେଉଥିଲ । ମୋର ରୂପ ସିନା ନାହିଁ ବୁଦ୍ଧି ଅଛି । ମୋତେ ତୁମେ ଜବାବ ଦେଇଥିଲ ବାହାହେବାକୁ । ଏବେ ମନା କରୁଛ କାହିଁକି ?'

ରାଜକୁମାରୀ ଲଜ୍ଜିତା ହେଲା । ସେ ମନେ ମନେ ନିଷ୍ପତ୍ତି କଲା ରାଜକୁମାରଙ୍କୁ ବିବାହ କରିବ ବୋଲି । ପରୀ ତାକୁ ବର ଦେଇଥିଲା । ସେ କଥା ତାର ମନେ ପଡ଼ିଗଲା । ସେ ଯେଉଁ ପୁରୁଷକୁ ଭଲ ପାଇବ, ତାକୁ ସେ ଅତିଶୟ ସୁନ୍ଦରପଣ ଦେଇ ପାରିବ ।''

ରାଜକୁମାରୀ ଜଟିଆ ରାଜକୁମାରକୁ ସୁନ୍ଦର ହୋଇଯିବା ପାଇଁ ମନେ ମନେ ପ୍ରାର୍ଥନା କଲା । ଦେଖୁ ଦେଖୁ ରାଜକୁମାରର ଜଟଟି କୁଆଡ଼େ ଉଭାନ ହୋଇଗଲା । ସେ ହୋଇଗଲା ଏକ ସୁନ୍ଦର ରାଜପୁରୁଷ । ସୈନ୍ୟ ସେନାପତିମାନେ ରାଜକୁମାରଙ୍କୁ ପ୍ରଥମେ ଚିହ୍ନିପାରିଲେ ନାହିଁ । ପରେ ତାଙ୍କୁ ରାଜକୁମାର ଜାଣି ଆନନ୍ଦରେ ନାଚିବାକୁ ଲାଗିଲେ । ରାଜକୁମାରୀ ରାଜକୁମାର ସହିତ ନିଜ ରାଜନବରରେ ଉପସ୍ଥିତ ହେଲା । ରାଜାରାଣୀ ଏପରି ଦିବ୍ୟସୁନ୍ଦର ରାଜକୁମାରକୁ ଜେମା ବରଣ କରିଛି ଜାଣି ଅତ୍ୟନ୍ତ ସୁଖୀ ହେଲେ । ଭଲ ତିଥି ଦେଖି ମହା ଆଡ଼ମ୍ବରରେ ବାହାଘର ହେଲା । ଦୁଇ ରାଜ୍ୟରେ ଆନନ୍ଦ ଉତ୍ସବର ସୀମା ରହିଲା ନାହିଁ ।



# କପାଳ ଲେଖନ କେ କରିବ ଆନ



ସେ କାଳର କଥା । ଇଉରୋପର ଫ୍ରାନ୍‌ସ ରାଜ୍ୟରେ ଜଣେ ରାଜା ଥିଲେ । ତାଙ୍କର ଅବା କେଉଁ କଥାରେ ଅଭାବ । ଧନ, ସମ୍ପତ୍ତି, କ୍ଷମତା ତ ଯାହାକୁ ଯେତେ । ରାଜ୍ୟର ଲୋକେ ଅତ୍ୟନ୍ତ ସୁଖରେ ଥାଆନ୍ତି । ପାଖ ପଡ଼ୋଶୀ ରାଜାମାନେ ତାଙ୍କୁ ସର୍ବଦା ଭୟ କରି ଥାଆନ୍ତି । ହେଲେ ଏତେ ସୁଖ ସୌଭାଗ୍ୟ ମଧ୍ୟରେ ରାଣୀଙ୍କର ମନରେ ଆଦୌ ସୁଖ ନଥାଏ । କାହିଁକି ନା ତାଙ୍କର କୋଳରେ ବିଧାତା ସନ୍ତାନଟିଏ ଦେଇ ନାହିଁ । ଏଥିପାଇଁ ରାଣୀ ବାରମାସରେ ନାନା ବ୍ରତ ଉପବାସ କରୁଥାନ୍ତି ।

ଦିନେ ରାଣୀ କୋଠା ଛାତ ଉପରେ ମନ ଦୁଃଖରେ ବସିଅଛନ୍ତି, ହଠାତ୍ ଆକାଶରେ ଉଡ଼ି ଉଡ଼ି ସରଗର ପରୀଟିଏ ଆସି ତାଙ୍କ ପାଖରେ ଓହ୍ଲାଇ ପଡ଼ିଲା । ପରୀକୁ ରାଣୀ ଆଦର କରି ପାଖରେ ବସାଇଲେ । ପରୀ କହିଲା, ''ରାଣୀ, ତମର ମନ କଥା ମୁଁ ଜାଣେ । କୋଳରେ ସନ୍ତାନଟିଏ ନାହିଁ ବୋଲି ତୁମେ ଭାବି ହେଉଛ । ମାତ୍ର ମୁଁ କ'ଣ କରିବି ? ତୁମର ତ କପାଳରେ ନାହିଁ ।''

ରାଣୀ ଏ କଥା ଶୁଣି କାନ୍ଦି ପକାଇଲେ । ପରୀକୁ କାକୁତି ମିନତି ହୋଇ କହିଲେ, ଯେପରି ହେଉ ମୋ କୋଳରେ ସନ୍ତାନଟିଏ ଚାହେଁ । ନଚେତ ଏ ଜୀବନରେ ଆଉ ମୂଲ୍ୟ କ'ଣ ?

ପରୀରାଣୀ ରାଣୀଙ୍କ ବିକଳ ସହି ନ ପାରି ତାଙ୍କୁ ଗୋଟିଏ ଫୁଲତୋଡ଼ା ଦେଇ କହିଲା, ''ଏଇଟିକୁ ଯତ୍ନରେ ସାଇତି ରଖ । ଅଳ୍ପକାଳ ପରେ ତୁମର ପିଲାଟିଏ ହେବ; ମାତ୍ର ସେ ହେବ ତୁମର ଦୁଃଖର କାରଣ । ସନ୍ତାନଟିଏ ଜନ୍ମ ହେଲା ପରେ ତା ମୁଣ୍ଡରେ ଏ ଫୁଲତୋଡ଼ାଟି ରଖିଦେବ ।''

ଏତିକି କହି ପରୀରାଣୀ ଉଡ଼ି ଉଡ଼ି ଆକାଶରେ ଅଦୃଶ୍ୟ ହୋଇଗଲା ।

ସତକୁ ସତ, କିଛିଦିନ ପରେ ରାଣୀଙ୍କର ଝିଅଟିଏ ହେଲା । ରାଣୀଙ୍କର ଆନନ୍ଦ କହିଲେ ନସରେ । ସେ ଧାଈମାନଙ୍କୁ ଆଦେଶଦେଲେ ପରୀ ରାଣୀ ଦେଇଥିବା ଫୁଲତୋଡ଼ାକୁ ଝିଅ ମୁଣ୍ଡରେ ଲଗାଇଦେବା ପାଇଁ । ଧାଈମାନେ ଫୁଲତୋଡ଼ାଟି ଝିଅ ମୁଣ୍ଡରେ ଯେମିତି ଲଗାଇ ଦେଇଛନ୍ତି, ସାଙ୍ଗେ ସାଙ୍ଗେ ସେ ଗୋଟିଏ ମାଙ୍କଡ଼ ପିଲା ହୋଇଗଲା । ରାଣୀଙ୍କର ହଳକ ଶୁଖିଲା । ତାଙ୍କୁ ଆଉ ବୁଦ୍ଧିବାଟ ଦିଶିଲା ନାହିଁ । ରାଜା ଯଦି ଜାଣିବେ ଯେ ରାଣୀ ଗୋଟିଏ ମାଙ୍କଡ଼ଛୁଆ ଜନ୍ମ କରିଛନ୍ତି ତେବେ ତାଙ୍କ ଭାଗ୍ୟରେ କଳାକନା ବୁଲିଯିବ ।

ଜଣେ ବୁଢ଼ୀ ଧାଈ ତାଙ୍କୁ ପରାମର୍ଶ ଦେଲା, ''ରାଜାଙ୍କୁ କହିବା, ଛୁଆଟା ଜନ୍ମ ହେବା ସଙ୍ଗେ ସଙ୍ଗେ ମରିଯାଇଛି । ଗୋଟିଏ ବାକ୍ସରେ ପୂରାଇ ମାଙ୍କଡ଼ ପିଲାଟିକୁ ନଈରେ ଭସାଇଦେବା ।''

ସତକୁ ସତ ମାଙ୍କଡ଼କୁ ଗୋଟିଏ ବାକ୍ସରେ ପୂରାଇ ରାଜାଘର ଚାକର ନଈରେ ଭସାଇଦେବ ବୋଲି ଗଲା । ନଦୀ କୂଳରେ ସେ ପହଞ୍ଚି ବାକ୍ସଟିକୁ ଭସାଇ ଦେବବୋଲି ବସିଛି, ଏତିକିବେଳେ ପଡ଼ୋଶୀ ରାଜ୍ୟର ରାଣୀ ଗୋଟିଏ ରଥରେ ବସି ସେହି ବାଟେ ଯାଉଥିଲେ । ତାଙ୍କ କୋଳରେ ତାଙ୍କର ଗୋଟିଏ ପାଞ୍ଚବର୍ଷର ପୁଅ । ସେ ମାଙ୍କଡ଼ ପିଲାଟିକୁ ଦେଖି ଖେଳିବ ବୋଲି ଜିଗର କଲା । ତେଣୁ ରାଣୀ ଚାକରକୁ ଟଙ୍କା ଦେଇ ମାଙ୍କଡ଼ପିଲାକୁ କିଣି ନେଇଗଲେ ।

ରାଜଉଆସ ମଧ୍ୟରେ ମାଙ୍କଡ଼ପିଲାଟି ବଡ଼ ଆଦର ଯତ୍ନରେ ଥାଏ । ରଜାପୁଅ ସାଥିରେ ଖେଳୁଥାଏ, ତାରି ହାତରୁ ଖାଉଥାଏ । ରଜାପୁଅ ପାଠ ପଢ଼ିଲେ ତାରି ପାଖରେ ବସି ସବୁ ଶୁଣେ । ଦିନେ ଜଣାଗଲା ଯେ, ମାଙ୍କଡ଼ର ପାଟି ଫିଟିଯାଇଛି । ସେ ଅବିକଳ ମଣିଷ ପରି କଥା କହୁଛି । ସମସ୍ତେ ତାଟକା ହୋଇଗଲେ ।

ରାଜମହଲର ସମସ୍ତେ ମାଙ୍କଡ଼ ସହିତ କୌତୁକ କରି ସୁଖ ପାଇଲେ । ଚାହୁଁ ଚାହୁଁ ମାଙ୍କଡ଼କୁ ଷୋଳବର୍ଷ ବୟସ ହୋଇଗଲା । ତା ବିଷୟରେ ଚାରିଆଡ଼େ ପ୍ରଚାର ହୋଇଯାଇଥାଏ । ପାଖ ବଣରେ ଜଣେ ମାଙ୍କଡ଼ ରାଜା ଥାଆନ୍ତି । ତାଙ୍କ ଅଧୀନରେ ଲକ୍ଷ ଲକ୍ଷ ମାଙ୍କଡ଼ ସୈନ୍ୟ । ସେମାନଙ୍କ ଅତ୍ୟାଚାରରେ ପାଖ ପଡ଼ୋଶୀ ରାଜାମାନେ କରପତ୍ର ଯୋଡ଼ି ଥାଆନ୍ତି । ଦିନେ ମାଙ୍କଡ଼ ରାଜା ଏହି ମାଙ୍କଡ଼ ରାଜକୁମାରୀକୁ ବାହା ହେବା ଉଦ୍ଦେଶ୍ୟରେ ଦୂତ ପଠାଇଲେ । ରାଜା ରାଣୀ ବା କାହିଁକି ମନା କରନ୍ତେ, ମାଙ୍କଡ଼ ରାଜାକୁ ମାଙ୍କଡ଼ ରାଜକୁମାରୀ ବାହା ହବ । ପୁଣି ଏହାଦ୍ୱାରା ତାଙ୍କ ସହିତ ବନ୍ଧୁତା ସ୍ଥାପିତ ହେବ ।

କିନ୍ତୁ ଏପରି ପ୍ରସ୍ତାବ ଶୁଣି ମାଙ୍କଡ଼ ରାଜକୁମାରୀର ମନରେ ସୁଖ ନ ଥାଏ । ସେ ଯାଇ ରାଜକୁମାରକୁ କହିଲା, "ମୁଁ ତୁମଛଡ଼ା ଆଉ କାହାକୁ ବାହାହେବି ନାହିଁ । ତୁମେ ଏଥିରେ ରାଜି ହୁଅ ।"

ମାଙ୍କଡ଼କୁ ବାହାହେବ ? ଏ କିପରି କଥା । ରାଜାପୁଅ ହସି ହସି ବେଦମ ହୋଇଗଲା ।

ମାଙ୍କଡ଼ ରାଜକୁମାରୀ ଦେଖିଲା ତାର ଆଉ ରକ୍ଷା ନାହିଁ । ସେ ହଠାତ୍ ଛାତଉପରୁ ଡେଇଁପଡ଼ି ଜଙ୍ଗଲ ଭିତରେ ଲୁଚିଗଲା । ତା ପଛରେ ରାଜାଘର ଲୋକେ କିଛି ବାଟ ଗୋଡ଼ାଇ ଗୋଡ଼ାଇ ଫେରିଆସିଲେ । ମାଙ୍କଡ଼ ରାଜକୁମାରୀ ମନଦୁଃଖରେ ଆତ୍ମହତ୍ୟା କରିବ ବୋଲି ଗୋଟିଏ ନଈ ଭିତରକୁ ଡେଇଁପଡ଼ିଲା । ସୁଅରେ ଭାସିଯାଉଛି, ମାଛମାନଙ୍କର ରାଜା ତାକୁ ପାଣି ଭିତର ଉଆସକୁ ନେଇଗଲେ । ତାର ହେପାଜତ କଲେ । ତାକୁ ଆଶ୍ୱାସନା ଦେଇ କହିଲେ, "ତୋର ଏ ଦୁଃଖ ଅଧିକ ଦିନ ରହିବ ନାହିଁ ।" ତାକୁ ଗୋଟିଏ ମ୍ୟାଜିକ୍ ମୁଦି, ମ୍ୟାଜିକ୍ ପଥର ଆଉ ଦର୍ପଣ ଦେଲେ । କହିଲେ, "ସାବଧାନରେ ରଖିଥିବୁ । ତୋର ବିପଦବେଳେ କାମରେ ଆସିବ ।"

ଗଲାବେଳେ ତାଙ୍କର କଇଁଛ ବାହନକୁ କହିଲେ, ମାଙ୍କଡ଼ ରାଜକୁମାରୀକୁ ରାଜ୍ୟର ସୀମା ପାରି କରିଦେବାପାଇଁ । ରାଜକୁମାରୀ କଇଁଛ ଉପରେ ବସି କେତେ ବଣ ବିଲ ଜଙ୍ଗଲ ପାରି ହୋଇଗଲା । ଶେଷରେ ପଡ଼ିଲା ଏକ ଅପନ୍ତରା ରାଜ୍ୟ । ଚାରିଆଡ଼େ ଖାଲି ବାଲି ଆଉ ବାଲି । ସେଇଠି କଇଁଛ ତାକୁ ଛାଡ଼ିଦେଇ ନିଜ ରାଜ୍ୟକୁ ଫେରିଗଲା ।

ମାଙ୍କଡ଼ ରାଜକୁମାରୀ ଏକୁଟିଆ ବସି ବିକଳ ହୋଇ କାନ୍ଦିଲା ? କ'ଣ କରିବ ? କୁଆଡ଼େ ଯିବ ? ମାଛ ରାଜା ତାକୁ କାହିଁକି ବଞ୍ଚାଇଲେ, ପୁଣି ଏ ଅପନ୍ତରା ରାଜ୍ୟରେ କାହିଁକି ଆଣି ଛାଡ଼ିଲେ ? କେତେ ସମୟ ପରେ ମନେପଡ଼ିଲା କୁହୁକ ମୁଦି, କୁହୁକ ପଥର ଆଉ ଦର୍ପଣ କଥା । ସେ ତାର ବ୍ୟାଗରୁ ମୁଦିଟି କାଢ଼ି ପିନ୍ଧି ପକାଇଲା । ମାତ୍ର ଏ କ'ଣ ହେଲା ! ତାର ଦେହର ଲୋମ କୁଆଡ଼େ ଚାହୁଁ ଚାହୁଁ ଉଭେଇଗଲା । ଲାଙ୍ଗୁଡ଼ କୁଆଡ଼େ ମିଳାଇଗଲା । ଦେହର ରଙ୍ଗ ସମ୍ପୂର୍ଣ୍ଣ ବଦଳିଗଲା । ହାତଗୋଡ଼ରେ ବଳ ଖୁନ୍ଦି ହୋଇପଡ଼ିଲା । ସେ ଦର୍ପଣରେ ନିଜକୁ ଦେଖି ବିଶ୍ୱାସ କରିପାରିଲା ନାହିଁ । ଏହି ଅଳ୍ପ ସମୟ ମଧ୍ୟରେ ସେ ଏକ ସୁନ୍ଦରୀ ରାଜକୁମାରୀ ହୋଇଯାଇଛି । ତା' ଦେହରେ କେତେ ଅଳଙ୍କାର ଭର୍ତ୍ତି ହୋଇରହିଛି ।

ଏହାପରେ ରାଜକୁମାରୀ କୁହୁକ ପଥରକୁ ଯେମିତି ରଗଡ଼ି ଦେଇଛି, ତାରି ମଧ୍ୟରୁ ଅସଂଖ୍ୟ ଲୋକ ବାହାରି ପଡ଼ିଲେ, ଆଉ ରାଜଝିଅର ଆଦେଶକୁ ଅପେକ୍ଷା କରିରହିଲେ । ସେହିମାନଙ୍କ ସାହାଯ୍ୟରେ ରାଜଝିଅ ସେଠାରେ ଗୋଟିଏ ରାଜପ୍ରାସାଦ ତିଆରି କଲା । ଧନଧାନ୍ୟରେ ରାଜଅମାର ଭର୍ତ୍ତି ହୋଇଗଲା । ସବୁବେଳେ ଦାସଦାସୀ ସୈନ୍ୟସାମନ୍ତ ଖଟିବାକୁ ଲାଗିଲେ । ରାଜକୁମାରୀ ନାଁ ଚାରିଆଡ଼େ ପ୍ରଚାର ହୋଇଗଲା । ସବୁଆଡୁ କେତେ କେତେ ବୀର ରାଜକୁମାର ଆସିଲେ ରାଜକୁମାରୀକୁ ବାହାହବା ପାଇଁ ।

ରାଜକୁମାରୀ ପାଖରେ ବଛା ବଛା ମଲ୍ଲ ବୀରମାନେ ଥାଆନ୍ତି । ରାଜକୁମାରୀ ପଣ କରି ଥାଏ ଯେଉଁ ରାଜକୁମାର ସେହି ମଲ୍ଲବୀରମାନଙ୍କୁ ପରାସ୍ତ କରିବ, ରାଜକୁମାରୀ ତାଙ୍କରି ହାତ ଧରିବ । କେତେଥାଡୁ କେତେ ରାଜକୁମାର ଆସି ମଲ୍ଲମାନଙ୍କ ହାତରେ ପରାଭବ ପାଇ ଫେରିଗଲେ ।

ଦିନକର କଥା । ରାଜକୁମାରୀ ମାଙ୍କଡ଼ଛୁଆ ହୋଇ ଯେଉଁ ରାଜକୁମାର ସହିତ ପିଲାଦିନେ ହସି ଖେଳି ବିତାଇଥିଲା, ସେ ମଧ ଆସିଲା ମଲ୍ଲମାନଙ୍କ ସହିତ ଲଢ଼ିବା ପାଇଁ । ରାଜକୁମାରକୁ ଦେଖି ରାଜକୁମାରୀ ଚିହ୍ନିପାରିଲା । ରାଜପାରିଷଦମାନେ ରାଜକୁମାରକୁ ଆଦର ଗଉରବ କରି ଅଭ୍ୟର୍ଥନା କଲେ । ରାଇଜର ଲୋକେ ଖୋଲା ପଡ଼ିଆରେ ଏକାଠି ହେଲେ । ମଲ୍ଲମାନଙ୍କ ସହିତ ରାଜକୁମାରର ପ୍ରବଳ ଲଢ଼େଇ ଚାଲିଥାଏ । କିଏ ଜିଣିବ କିଏ ହାରିବ କହିବା କଷ୍ଟକର । ରାଜକୁମାରୀ ମନେ ମନେ ପ୍ରଭୁଙ୍କୁ ଡାକୁଥାଏ, ''ହେ ଭଗବାନ ! ରାଜକୁମାରଙ୍କୁ ଜୟୀ କରିଦିଅ ।''

ସତକୁ ସତ, ରାଜକୁମାରୀର ଡାକ ଭଗବାନ ଶୁଣିଲେ । ମଲ୍ଲମାନେ ପରାସ୍ତ ହେଲେ । ମାତ୍ର ଏହି ଲଢ଼େଇରେ ରାଜକୁମାର ମଧ ଅତ୍ୟନ୍ତ ଅସୁସ୍ଥ ହୋଇପଡ଼ିଲେ । ରାଜକୁମାରୀ ଆଦେଶରେ ରାଜକୁମାରକୁ ଦାସୀମାନେ ରାଜମହଲକୁ ନେଇଗଲେ । ସେଠାରେ ନିଜେ ରାଜକୁମାରୀ ଅନବରତ ସେବା କରିବାକୁ ଲାଗିଲେ ।

କିଛିଦିନ ପରେ ରାଜକୁମାର ସୁସ୍ଥ ହେଲା । ରାଜକୁମାରୀର ସେବା ଯତ୍ନ ପାଇଁ ସେ ଆହୁରି ମୁଗ୍ଧ ହୋଇଗଲା । ଭାବିଲା, ଭାଗ୍ୟରେ ଥିଲେ ଏପରି ରାଜକୁମାରୀକୁ ରାଣୀ କରିବାର ସୌଭାଗ୍ୟ ମିଳେ ।

ରାଜକୁମାରୀ ଦିନେ ତାର ଅତୀତର ସମସ୍ତ କଥା ଫିଟାଇ କହିଲା । ସେ କିପରି ମାଙ୍କଡ଼ ଥିଲା ଏବଂ କିପରି ତାର ଘର ଛାଡ଼ି ଚାଲିଆସିଲା ଏବଂ କିପରି ମାଛରାଜାର ଆଶୀର୍ବାଦରୁ ସେ ମନୁଷ୍ୟ ରୂପ ପାଇଲା ଏବଂ ଏଠାରେ ନଅର ତିଆରି କଲା ଇତ୍ୟାଦି । ମୋଟ ଉପରେ ପରୀରାଣୀର ଅଭିଶାପରୁ ସେ ମାଙ୍କଡ଼ ରୂପ ପାଇଥିଲା ଏବଂ ମାଛରାଜାର ଦୟାରୁ ମନୁଷ୍ୟ ରୂପ ଲାଭକଲା ।

ଏକଥା ଶୁଣି ରାଜା ପୁଅର ଆନନ୍ଦ କହିଲେ ନ ସରେ । ସେ ତାର ବାପା ବୋଉଙ୍କୁ ଡକାଇ ଆଣିଲା । ସେମାନେ ରାଜକୁମାରୀର ରୂପ ଦେଖି ମୋହିତ ହୋଇଗଲେ । କେତେ ଆଡ଼ମ୍ବରରେ ବାହାଘର ହେଲା । ରାଜାପୁଅ ଏବଂ ରାଜକୁମାରୀ ସେଠାରେ ନୂଆ ରାଜ୍ୟ କରି ସୁଖରେ ରହିଲେ ।



# ସୁନା ପଞ୍ଜୁରୀରେ ସୁନା ଚଢ଼େଇ



ପ୍ରାଚୀନ କାଳର କଥା । ରୁଷିଆ ଦେଶରେ ଜଣେ ରାଜା ରାଜୁତି କରୁଥିଲେ । ତାଙ୍କର ତିନିପୁଅ । ସାନପୁଅ ଇଭାନ ଅତ୍ୟନ୍ତ ଚତୁର । ରାଜା ତାଙ୍କୁ ସାନପୁଅ ବୋଲି ଯେତିକି ଗେହ୍ଲା କରୁଥାଆନ୍ତି, ତାର ବୁଦ୍ଧି ପାଇଁ ମଧ୍ୟ ସେତିକି ପ୍ରଶଂସା କରୁଥାଆନ୍ତି ।

ରାଜାଙ୍କର ସୁନ୍ଦର ବଗିଚାଟିଏ ଥାଏ । ସେଠାରେ କେତେ ରକମର ଫୁଲ ଫଳର ଗଛ । ରାଜା ବଗିଚାର ଅତ୍ୟନ୍ତ ଯତ୍ନ ନେଉଥାଆନ୍ତି । ସେଇ ବଗିଚାରେ ଗୋଟିଏ ଆତ ଗଛ ଥାଏ । ସେ ଗଛରେ ସୁନାର ଆତ ଫଳେ । ଦିନେ ରାଜା ବଗିଚାରେ ବୁଲୁ ବୁଲୁ ଦେଖିଲେ, ତାଙ୍କର ସୁନା ଆତ କେହି ଚୋରାଇ ନେଇଯାଉଛି । ମନ ଦୁଃଖରେ ଭାଙ୍ଗିପଡ଼ିଲେ । ରାଜାଙ୍କର ଜଗୁଆଳମାନେ ଯେତେ ସାବଧାନ ହେଲେ ମଧ୍ୟ ପ୍ରତିଦିନ ସୁନା ଆତ ଚୋରି ହେବାକୁ ଲାଗିଲା । ଦିନେ ରାଜା ପୁଅମାନଙ୍କୁ ଡାକି ଚୋରକୁ ଧରିବା ପାଇଁ ଆଦେଶ ଦେଲେ । ବଡ଼ ଦୁଇପୁଅ ରାତି ଅଧଯାଏ ଚେଇଁ ରହି ଦେଖିଲେ, କେହି ଚୋର ଆସୁନାହାନ୍ତି । ତେଣୁ ପାହାନ୍ତା ପହରକୁ ଘୁମାଇ ପଡ଼ିଲେ । ସେହି ସମୟରେ ଆତ ଚୋରି ହୋଇଗଲା । ଶେଷରେ ପଡ଼ିଲା ସାନପୁଅର ପାଳି । ଇଭାନ୍ ରାତିଯାକ ବଗିଚାରେ ବୁଲୁଥାଏ । ଆଖିରେ ଘୁମ୍ ଆସିଲାକ୍ଷଣି କାକର ଲଗାଇ ନିଦ ଭାଙ୍ଗି ଦେଉଥାଏ । ପାହାନ୍ତା ପହରକୁ ଦେଖିଲା ଗୋଟିଏ ହୁଲୁହୁଲା ଚଢ଼େଇ ଆତଗଛରେ ବସିଛି । ତାର ଦେହଯାକ ଖାଲି ସୁନାର ପର । ଇଭାନ୍ ସଙ୍ଗେ ସଙ୍ଗେ ଗଛକୁ ଚଢ଼ିଯାଇ ଚଢ଼େଇର ଲାଞ୍ଜକୁ ଧରି ପକାଇଲା । ଚଢ଼େଇ ଉଡ଼ିଗଲା ସିନା ରଜାପୁଅ ହାତରେ ସୁନା ପରଟିଏ ଲାଗିରହିଲା ।

ସକାଳୁ ଦରବାର ବସିଲା । ରାଜା ସାନପୁଅକୁ ଆତ ଚୋର ବିଷୟରେ ପଚାରିଲେ । ଇଭାନ କହିଲା, ''ଚୋରକୁ ସିନା ଅଟକାଇ ପାରିଲି ନାହିଁ । ଚୋର କିଏ ଜଣାପଡ଼ିଛି ।'' ଏହା କହି ସୁନା ପରଟିକୁ ରାଜାଙ୍କ ଆଗରେ ଥୋଇଦେଲା । ରାଜା ସୁନାଚଢ଼େଇ କଥା ଜାଣି ଆଶ୍ଚର୍ଯ୍ୟ ହେଲେ । ସେ ତ ମନୁଆ ଲୋକ । ତିନିପୁଅଙ୍କୁ ସେ ଆଦେଶ ଦେଲେ, ଯେ ଆତ ଚୋରକୁ ଧରିଆଣିବ, ସେ ହେବ ମୋ ସିଂହାସନର ଉତ୍ତରାଧିକାରୀ । ତିନି ଭାଇ ତିନୋଟି ଘୋଡ଼ା ଚଢ଼ି ସୁନା ଚଢ଼େଇ ଖୋଜିବା ପାଇଁ ତିନିଦିଗକୁ ଚାଲିଲେ । ସାନଭାଇ ଇଭାନ୍ ଅନେକ ବାଟ ଘୋଡ଼ାରେ ଗଲାପରେ

ଗୋଟିଏ ବଗିଚା ପାଖରେ ଥକା ମାରିବା ପାଇଁ ଓହ୍ଲାଇପଡ଼ିଲା । ଗୋଟିଏ ଗଛ ମୂଳେ ବସୁ ବସୁ କେତେବେଳେ ତାକୁ ନିଦ ଲାଗିଯାଇଛି । ରାତି ପାହି ସକାଳ ହେଲା । ଇଭାନ ଆଖିମଳି ଉଠିଲାବେଳକୁ ବେଳ ଆସି ପହରେ ହେଲାଣି । ସେ ତାର ଘୋଡ଼ାକୁ ଖୋଜିବସିଲା । ଘୋଡ଼ା କେଉଁଠି ଦେଖାପଡ଼ିଲା ନାହିଁ । ସେ ଯେଉଁ ଗଛ ମୂଳେ ବନ୍ଧା ହୋଇଥିଲା ସେଠାରେ ଯାଇ ଦେଖିଲାବେଳକୁ ଘୋଡ଼ା ବଦଳରେ ତାର ହାଡ଼ତକ ଜମା ହୋଇଛି । ଇଭାନ ମନଦୁଃଖରେ ଭାଙ୍ଗିପଡ଼ି କାନ୍ଦିବାକୁ ଲାଗିଲା । ସେ ଆଉ କ'ଣ କରିବ ! ମନ ଦୁଃଖରେ ଚାଲିବାକୁ ଲାଗିଲା । କେତେବାଟ ଗଲାପରେ ଗୋଟିଏ ବଣ ପାଖରେ ଗଛ ମୂଳେ ଛାଇରେ ବସିପଡ଼ିଲା । ଗୋଡ଼ ହାତ ଭାଙ୍ଗିପଡୁଥାଏ । ଏତିକିବେଳେ ସେଠାରେ କୁଆଡ଼ୁ ଆସି ଗୋଟାଏ ହେଟାବାଘ ପହଞ୍ଚିଲା । ସେ ଇଭାନକୁ ପଚାରିଲା, "ଏପରି ମନଦୁଃଖ କରି କାହିଁକି ବସିଛୁ ?" ଇଭାନ କହିଲା, "ମନଦୁଃଖ ନ କରିବା ଛଡ଼ା ଉପାୟ କ'ଣ ? ମୋର ଘୋଡ଼ାଟି ଥିଲା ଏକମାତ୍ର ଆଶ୍ରୟ । ତାକୁ କିଏ ଖାଇଗଲା । ସୁନା ଚଢ଼େଇ ଖୋଜିବା ମୋର କପାଳରେ ଆଉ ନାହିଁ । ତେଣୁ ବାପାଙ୍କ ରାଜଗାଦୀକୁ ଆଉ କାହିଁକି ଆଶା କରିବି ?"

ହେଟାବାଘ ଇଭାନର କଥାଶୁଣି ସହାନୁଭୂତି ପ୍ରକାଶ କଲା । ସେ କହିଲା, "ତୁ ଦୁଃଖ କରନାହିଁ । ତୋ ଘୋଡ଼ାଟି ମୁଁ ଖାଇଛି । ତେଣୁ ତୋତେ ମୁଁ ସାହାଯ୍ୟ କରିବି, ସୁନାଚଢ଼େଇ ଖୋଜି ଦେବାପାଇଁ । ତୁ ମୋ ପିଠିରେ ବସ । ମୁଁ ତୋତେ ସୁନା ଚଢ଼େଇ ରହିଥିବା ରାଜ୍ୟକୁ ନେଇଯିବି ।"

ଇଭାନ ଯେମିତି ହେଟାବାଘ ପିଠିରେ ବସିଲା, ସେ ପବନ ପରି ଦଉଡ଼ିବାକୁ ଲାଗିଲା । ଶେଷରେ ସେ ଦୁହେଁ ଯାଇ ପହଞ୍ଚିଲେ ଗୋଟିଏ ଦୁର୍ଗ ପାଖରେ । ସେଇଠି ଇଭାନକୁ ଓହ୍ଲାଇ ଦେଇ ହେଟାବାଘ କହିଲା, "ଆମେ ଅସଲ ସମୟରେ ଆସି ପହଞ୍ଚି ଯାଇଛେ । ସବୁ ଜଗୁଆଳି ଶୋଇପଡ଼ିଛନ୍ତି । ତୁ ଚୁପଚାପ୍ ଦୁର୍ଗ କାନ୍ଥରେ ଚଢ଼ି ଦେଖିବୁ ଗୋଟିଏ ପଞ୍ଜୁରୀ ଭିତରେ ସୁନା ଚଢ଼େଇ ଅଛି । ପଞ୍ଜୁରୀ ଭିତରୁ ସୁନାଚଢ଼େଇଟି ନେଇଆସିବୁ । ସୁନାପଞ୍ଜୁରୀକୁ ଆଦୌ ଲୋଭ କରିବୁ ନାହିଁ ।" ଇଭାନ ଦୁର୍ଗର କାନ୍ଥରେ ଚଢ଼ି ଦେଖିଲା, "ସତକୁ ସତ ସୁନା ପଞ୍ଜୁରୀରେ ସୁନାଚଢ଼େଇ ବସିଛି । ବଡ଼ ସୁନ୍ଦର ଦେଖାଯାଉଛି । ସେ ଭାବିଲା, ଏଡ଼େ ସୁନ୍ଦର ଚଢ଼େଇକୁ ପଞ୍ଜୁରୀଟି ନ ହେଲେ ଘଟଣ ହେବନାହିଁ ।" ଏହାଭାବି ସେ ଯେମିତି ସୁନାପଞ୍ଜୁରୀଟି ଉଠାଇଛି ସଙ୍ଗେ ସଙ୍ଗେ ଜଗୁଆଳିମାନେ ଉଠିବସିଲେ । ଚାରିଆଡ଼େ ଗହଳ ଚହଳ ଆରମ୍ଭ ହୋଇଗଲା । ଜଗୁଆଳିମାନେ ଆସି ସୁନାପଞ୍ଜୁରୀ ଚୋର ଇଭାନ୍‌କୁ ବାନ୍ଧି ପକାଇଲେ ଏବଂ ରାଜ୍ୟର ରାଜାଙ୍କ ପାଖରେ ନେଇ ହାଜର କଲେ । ରାଜା ଇଭାନ୍‌କୁ ବହୁତ ଧିକ୍କାରିଲେ । ଶେଷରେ କହିଲେ, "ତୁ ଯଦି ପଡ଼ୋଶୀ ରାଜ୍ୟର ସୁନାଘୋଡ଼ାକୁ ଆଣି ମୋତେ ଦେବୁ, ତେବେ ତୋତେ ସୁନା ଚଢ଼େଇଟି ଉପହାର ଦେବି । ନଚେତ ତୋର ମୃତ୍ୟୁଦଣ୍ଡ ।"

ଇଭାନ ମନ ଦୁଃଖରେ ଦୁର୍ଗ ବାହାରକୁ ଆସିଲା । ହେଟାବାଘ ତା'ପାଖକୁ ଆସି କହିଲା, ''ମୋ କଥା ଶୁଣିଲୁ ନାହିଁ । ଏବେ ବିପଦ ପଡ଼ିଲା ।'' ଇଭାନ ଦୋଷ ମାନିଲା ।

ହେଟାବାଘ କହିଲା, ''ଏଥର ମୋର ବୋଲ କର । ଆଉ ବିପଦ ପଡ଼ିବ ନାହିଁ ।'' ଏହା କହି ପିଠିରେ ବସାଇ ଇଭାନ୍‌କୁ ସୁନାଘୋଡ଼ା ରାଜ୍ୟକୁ ନେଇଗଲା, ଇଭାନ୍‌କୁ ପିଠିରୁ ଓହ୍ଲାଇ କହିଲା, ''ଦେଖ, ରଜାଘର ଘୋଡ଼ାଶାଳରେ ସୁନାଘୋଡ଼ା ବନ୍ଧା ହୋଇଛି । ଜଗୁଆଳିମାନେ ଶୋଇପଡ଼ିଛନ୍ତି । ଘୋଡାଟିକୁ ଫିଟାଇ ନେଇଆସିବୁ । ସାବଧାନ ! ସେଠାରେ ଝୁଲୁଥିବା ସୁନା ହାଉଦାକୁ ଆଣିବୁ ନାହିଁ ।'' ଇଭାନ ହଁ କରି ଗଲା ସିନା, ଘୋଡ଼ା ପାଖରେ ପହଞ୍ଚି ସବୁ ଭୁଲିଗଲା । ବିଚାରିଲା ସୁନା ଘୋଡ଼ାକୁ ସୁନା ହାଉଦା ସିନା ମାନିବ । ସେ ଯେମିତି ସୁନା ହାଉଦାରେ ହାତ ଦେଇଛି, ଜଗୁଆଳିମାନେ ଉଠିପଡ଼ି ତାକୁ ବାନ୍ଧି ପକାଇଲେ ଏବଂ ରାଜାଙ୍କ ପାଖରେ ପହଞ୍ଚାଇ ଦେଲେ । ରାଜା ସବୁ ଶୁଣି ରାଗରେ ନିଆଁ । ଶେଷକୁ କହିଲେ, ''ପାଖ ରାଜ୍ୟରେ ରାଜକୁମାରୀ ହେଲେନ୍ ଅତି ସୁନ୍ଦରୀ । ତାକୁ ଆଣି ମୋତେ ଦେଲେ ତୋତେ ସୁନାଘୋଡ଼ାଟି ଦେବି ।''

ଏଥର ରାଜକୁମାର ଇଭାନ୍ ମନ ଦୁଃଖରେ ହେଟାବାଘ ପାଖରେ ଆସି କ୍ଷମା ମାଗିଲା । ହେଟା କହିଲା, ''ଆଉ ବ୍ୟସ୍ତ ହୋଇ ଲାଭ କଅଣ ? ଏଥର ମୁଁ ରାଜକନ୍ୟାକୁ ନେଇଆସିବି । ତୁ କେବଳ ରାଜନଅର ବାହାରେ ଅପେକ୍ଷା କରିଥିବୁ ।''

ଇଭାନ ହଁ ଭରି ଅପେକ୍ଷା କଲା । ହେଟାବାଘ ରାଜନଅର ଭିତରେ ପଶି ରଜାଝିଅ ହେଲେନ୍‌କୁ କାଖେଇ ବାହାରକୁ ପକାଇ ଆସିଲା । ପୃଥିବୀରେ ପୁଣି ଏଡ଼େ ସୁନ୍ଦରୀ ଥାଆନ୍ତି । ରାଜା ଝିଅକୁ ଦେଖି ଇଭାନ୍ ଯେତିକି ଖୁସୀ ହେଲା, ସେତିକି ମନ ଦୁଃଖ କଲା । ହେଟାବାଘ ରଜାପୁଅର ମନକଥା ବୁଝିପାରିଲା । ସେ କହିଲା, ''ତୁ ବ୍ୟସ୍ତ ହୁଅନାହିଁ । ରଜାଝିଅକୁ ବାହାରେ ଲୁଚାଇ ଦେବା । ମୁଁ ରଜାଝିଅ ବେଶରେ ରାଜନବରକୁ ଯିବି । ତୁ ସୁନା ଘୋଡ଼ାକୁ ନେଇଆସିଲେ ମୁଁ ପଳାଇ ଆସିବି ।''

ଠିକ୍ ସେହିପରି ହେଲା । ସେ ରାଜ୍ୟର ରାଜା ରାଜକୁମାରୀ ସାଜିଥିବା ଗଧିଆକୁ ପାଇ ଭୁଲିଗଲେ ଏବଂ ଇଭାନ୍‌କୁ ସୁନାଘୋଡ଼ା ଓ ସୁନାହାଉଦା ଦେଇ ବିଦାୟ ଦେଲେ । ଇଭାନ୍ ରାଜ୍ୟର ସୀମା ପାରି ହୋଇନାହିଁ, ହେଟାବାଘ ଆସି ତାଙ୍କ ପାଖରେ ହାଜର ।

ତାପରେ ସେମାନେ ପହଞ୍ଚିଲେ ସୁନାଚଢ଼େଇ ଥିବା ରାଜ୍ୟରେ । ସେଠାରେ ମଧ ହେଟାବାଘ ସୁନା ଘୋଡ଼ାରୂପରେ ଇଭାନ୍ ସାଙ୍ଗରେ ଗଲା । ଏଣେ ଅସଲ ସୁନାଘୋଡ଼ା ଓ ରାଜକୁମାରୀ ହେଲେନ୍ ବାହାରେ ଅପେକ୍ଷା କଲେ । ଛଦ୍ମ ସୁନାଘୋଡ଼ା ପାଇ ରାଜା ଇଭାନ୍‌କୁ ସୁନାପଞ୍ଜୁରୀ ସହିତ ସୁନାଚଢ଼େଇକୁ ଦେଇଦେଲେ । ଇଭାନ୍

ସୁନାଚଢ଼େଇ, ସୁନାଘୋଡ଼ା ଓ ସୁନ୍ଦରୀ ହେଲେନ୍‌କୁ ନେଇ ନିଜ ରାଜ୍ୟକୁ ବାହାରିଲା । ହେଟାବାଘ ତା'ଠାରୁ ବାଟରୁ ବିଦାୟ ନେଲା ।

ଇଭାନ୍ ଯାଉ ଯାଉ ବାଟରେ ଦୁଇ ବଡ଼ ଭାଇକୁ ଭେଟିଲା । ସେମାନେ ଇଭାନ୍‌ର ସଫଳତା ଦେଖି ଈର୍ଷା କରିବାକୁ ଲାଗିଲେ । ତାକୁ କୌଶଳରେ ଭୁଲାଇ ଖାଇବା ପଦାର୍ଥରେ ବିଷ ଦେଇଦେଲେ । ସେ ମରିଯିବାରୁ ହେଲେନ୍, ସୁନାଘୋଡ଼ା ଓ ସୁନାପକ୍ଷୀକୁ ଧରି ରାଜ୍ୟକୁ ଚାଲିଲେ । ହେଟାବାଘ ଏହା ଜାଣିପାରି ବଣରୁ ଔଷଧ ଆଣି ଇଭାନ୍‌କୁ ଦେଲା । ସେ ତାକୁ ଖାଇ ଜୀବନ ପାଇଲା । ହେଟାବାଘ ବଡ଼ ଦୁଇଭାଇଙ୍କୁ ମାରି ପକାଇଲା । ସାନ ରାଜକୁମାର ଇଭାନ୍ ରାଜ୍ୟରେ ପହଞ୍ଚିଲା । ରାଜା ତାର ସଫଳତାରେ ଭାରି ଖୁସି ହେଲେ । ବାପାଙ୍କ ଅନ୍ତେ ସେ ରାଜା ହୋଇ ହେଲେନ୍ ସହିତ ସୁଖରେ ରହିଲା ।

# ଏ ମନ ଭାବୁଥାଇ ଯାହା





ସୋଭିଏତ୍ ଋଷର ଗୋଟିଏ ଗାଁ । ସେଇ ଗାଆଁରେ ଜଣେ ଚାଷୀ ଲୋକର ତିନୋଟି ଝିଅ ଥିଲେ । ଝିଅମାନଙ୍କର ମାଆ ମରିଯାଇଥିଲା । ସେମାନେ ନିଜର ବାପା ପାଖରେ ରହୁଥିଲେ । ମାଆ ମଲାଦିନୁ ଘରଯାକର ଦାୟିତ୍ୱ ସାନଝିଅ ମୁଣ୍ଡରେ । ବଡ଼ ଦି'ଭଉଣୀ ଘରକାମରେ ମୋଟେ ମନ ଦିଅନ୍ତି ନାହିଁ । ସବୁବେଳେ ବେଶଭୂଷା ହୋଇ ଗାଁଯାକ ବୁଲୁଥାଆନ୍ତି । ସାନଝିଅଟି ଉପରେ ଚାଷୀଟି ଅତ୍ୟନ୍ତ ସୁଖୀ ଥାଏ । ତା'ପରି ଝିଅ ପାଇଥିବାରୁ ସେ ନିଜକୁ ଭାଗ୍ୟବାନ ବୋଲି ମନେ କରୁଥାଏ ।

ଦିନେ ଚାଷୀ ଦୂର ସହରକୁ କୌଣସି କାମରେ ବାହାରିଲା । ବଡ଼ ଝିଅ ଦୁହିଁଙ୍କୁ ଡାକି ପଚାରିଲା, ପିଲାଏ ତୁମ ପାଇଁ କ'ଣ ଆଣିବି କୁହ । ଝିଅ ଦୁହେଁ କହିଲେ, ''ବାପା ! ଆମପାଇଁ ଦାମିକା ସଉକିନିଆ ପୋଷାକ ଆଣିବ ।'' ସାନଝିଅକୁ ମଧ ବାପ ପଚାରିଲା, ''ତୋର କ'ଣ ଦରକାର ?'' ସାନଝିଅ କହିଲା, ''ମୋର କିଛି ଦରକାର ନାହିଁ । ଯଦି ପାରିବ ଗୋଟିଏ ଗଣ୍ଡଭେିରବ ଚଢ଼େଇର ପର ଆଣିବ ।''

ଚାଷୀ ଯାଇଁ ସେହି ସହରରେ ପହଞ୍ଚିଲା । ଅଳ୍ପଦିନ ମଧରେ ତାର କାମ ସରିଯିବାରୁ ଝିଅମାନଙ୍କର ବରାଦମୁତାବକ ଦାମିକା ପୋଷାକ କିଣିଲା । ମାତ୍ର ଯେତେ ବଜାର ବୁଲିଲା କେହି ହେଲେ ଗଣ୍ଡଭେିରବ ଚଢ଼େଇର ପର ବିଷୟରେ କିଛି କହିପାରିଲେ ନାହିଁ । ଶେଷକୁ ବୁଢ଼ା ହତାଶ ମନରେ ଷ୍ଟେସନକୁ ଫେରିଆସିଲା । ତାର ସାନଝିଅର ମନ କଥା ପୂରଣ ନ କରିପାରିବାରୁ ଦୁଃଖ ହେଉଥାଏ । ଏହି ସମୟରେ ଜଣେ ବୁଢ଼ା ବାମନ ସହିତ ତାର ସାକ୍ଷାତ ହେଲା । ଚାଷୀ ସେଇ ବାମନ ବୁଢ଼ାକୁ ପଚାରିଲା—''ମଉସା, ତୁମ ସହରରେ କେଉଁଠି ଗଣ୍ଡଭେିରବ ଚଢ଼େଇର ପର ମିଳିବ ତୁମେ କହିପାରିବ ?'' ବାମନଟି ମୁରୁକି ହସି କହିଲା, ''ମୁଁ ସେ ପରଟି ଦେଇପାରିବି । ମାତ୍ର ମୋତେ ଶହେଟି ମୁଦ୍ରା ଦେବାକୁ ପଡ଼ିବ ।''

ଏକଥା ଶୁଣି କୃଷକ କହିଲା, ''ଯେତେ ପଇସା ହେଉ ମୁଁ ଦେବି । ମୋତେ କିନ୍ତୁ ପରଟି ଦିଅ ।'' ସେ ଶହେଟି ମୁଦ୍ରା ଦେଇ ବାମନଠାରୁ ମାମୁଲି ପରଟିଏ କିଣିଲା । ଚାଷୀ ବୁଝିପାରିଲା ନାହିଁ, ଏଇ ପରଟି ଝିଅର କେଉଁ କାମରେ ଲାଗିବ ।

ଘରକୁ ଫେରି ଆସିଲା ପରେ ବଡ଼ ଦୁଇଝିଅ ବରାଦମୁତାବକ ଦାମିକା ପୋଷାକ ପାଇ ଭାରି ଖୁସି ହେଲେ । ତାକୁ ଚଞ୍ଚଳ ପିନ୍ଧି ପକାଇ ଗାଆଁ ବୁଲିବାକୁ ବାହାରିପଡ଼ିଲେ ।

ସେମାନେ ଯେତେବେଳେ ସାନଭଉଣୀର ମାମୁଲି ପରଟିକୁ ଦେଖିଲେ, ହସି ହସି ଗଡ଼ିଗଲେ । ଭାବିଲେ, ସାନଭଉଣୀର ମୁଣ୍ଡ ଖରାପ ହୋଇଗଲାଣି । ବାପା ମଧ ସେଇ ସାମାନ୍ୟ ପରଟାକୁ ଏତେ ଟଙ୍କା ଦେଇ ଗେହ୍ଲା ଝିଅ ପାଇଁ କାହିଁକି ଆଣୁଥିଲେ କେଜାଣି ।

ସାନଭଉଣୀ କାହାକୁ କିଛି କହିଲା ନାହିଁ । ସେ ତାର ଶୋଇଲା ଘରେ ପହଞ୍ଚି ମାଟିତଳେ ପରଟି ରଖିଦେଲା । ରାତି ଅଧବେଳକୁ ତାର ଝରକା ବାଟଦେଇ ଗୋଟିଏ ଚଢ଼େଇ ପଶିଆସିଲା ଏବଂ ଘର ଭିତରେ ସୁନ୍ଦର ରାଜକୁମାରରେ ପରିଣତ ହୋଇଗଲା । ରାଜକୁମାରକୁ ପାଖରେ ପାଇ ସାନଭଉଣୀ ଭାରି ଖୁସୀ ହୋଇଗଲା । ଦୁଇଜଣ ବସି କେତେ ହସଖୁସି ହେଲେ । ରାତି ପାହିଲା ପରେ ସେ ରାଜକୁମାର ପୁଣି ପକ୍ଷୀ ହୋଇ ଉଡ଼ି ଚାଲିଗଲା ।

ରାତିପାହି ସକାଳ ହେଲା । ସେ ଘରକୁ ବଡ଼ ଦୁଇଭଉଣୀ ଯେତେବେଳେ ଯାଆନ୍ତି, ସେମାନେ ଦେଖିଲେ ଘର ଖାଲି ବାସନାରେ ମହକି ଉଠୁଛି । ଏହାର କାରଣ କିଛି ସେମାନେ ବୁଝିପାରିଲେ ନାହିଁ । ଏତିକିବେଳେ ଟେବୁଲ ଉପରେ ଆଖି ପଡ଼ିଗଲା । ତା' ଉପରେ ଗୋଟିଏ ପାଟ ପଗଡ଼ି ଥୁଆ ହୋଇଥିଲା । ରାଜକୁମାର ଗଲାବେଳେ ସେଇଟି ନେବାକୁ ଭୁଲି ଯାଇଥିଲା । ଦୁଇ ବଡ଼ ଭଉଣୀ ପଗଡ଼ି କାହାର ବୋଲି ପଚାରିଲେ । ସାନଭଉଣୀ କିଛି ନ କହି ଖାଲି ମୁରୁକି ମୁରୁକି ହସିଲା । ତେଣୁ ବଡ଼ ଦୁଇଭଉଣୀଙ୍କ ମନରେ ସନ୍ଦେହ ହେଲା ।

ତା' ପରଦିନ ରାତିରେ ବଡ଼ ଦୁଇଭଉଣୀ ଜଗି ରହିଲେ । ରାତି ଅଧରେ ସେହି ଚଢ଼େଇଟି ଝରକା ଭିତରେ ପଶିଆସିଲା । ସେ ଦୁହେଁ ଦେଖିଲେ ସାନଭଉଣୀ ଘରେ କେଡ଼େ ସୁନ୍ଦର ରାଜକୁମାର । ତାର ବେଶ ପୋଷାକରେ ଆଖି ଝଲସି ଉଠୁଛି । ସକାଳ ହେବାରୁ ରାଜକୁମାର ପକ୍ଷୀ ହୋଇଉଡ଼ିଗଲା । ଏଥିରେ ଦୁଇ ବଡ଼ ଭଉଣୀଙ୍କର ଭୟଙ୍କର ରାଗ ହେଲା । ସେମାନେ ତା' ପରଦିନ ଚୁପ୍‌ଚାପ୍ ସାନ ଭଉଣୀ ଝରକାରେ କଣ୍ଟା ଛାଟି ଦେଲେ । ରାତିରେ ଯେତେବେଳେ ରାଜକୁମାର ଚଢ଼େଇ ରୂପରେ ଆସେ କଣ୍ଟାରେ ତାର ପର ଲାଗି ଯାଇ ଛିଣ୍ଡିଗଲା । ସେ ବଡ଼ କିଲିବିଲି ହୋଇ ସାନଭଉଣୀକୁ କହିଗଲା, ଏତେ କଷ୍ଟ ଦେଲୁ । ମୋତେ ପାଇବାକୁ ହେଲେ ଲୁହା ଜୋତା ସାରିବାକୁ ପଡ଼ିବ ।

ଏତିକିବେଳେ ସାନଭଉଣୀର ନିଦ ଚାଉଁକିନା ଭାଙ୍ଗିଗଲା । ସେ ଦେଖିଲା ଝରକାରେ କଣ୍ଟା ଛଟା ହୋଇଛି । ରାଜକୁମାର କଲବଲ ହୋଇ ଉଡ଼ି ପଳାଇଯାଉଛି । କାନ୍ଦିବା ହିଁ ତାର ସାର ହେଲା । ବୁଝିପାରିଲା ଏହା ତାର ଭଉଣୀମାନଙ୍କର କାମ ।

ତା' ଆରଦିନ ସାନଭଉଣୀ ଲୁହା ଜୋତା ହଳେ ବରାଦ କରି ପିନ୍ଧିଲା ଏବଂ କାହାକୁ କିଛି ନ କହି ରାଜକୁମାରକୁ ଖୋଜି ବାହାରିଲା ।

ଖୋଜି ଖୋଜି କେତେ ରାଜ୍ୟ ବୁଲିଲା । ଲୁହା ଜୋତା ଘାରି ହୋଇ ସରିଯିବାକୁ ବସିଲା ସିନା ରାଜକୁମାର ଖବର କିଛି ମିଳିଲା ନାହିଁ । ଝିଅଟି ଶେଷରେ ସାତସମୁଦ୍ର ତେର ନଈ ପାରି ହୋଇ ଗୋଟିଏ ରାଜ୍ୟରେ ପହଞ୍ଚିଲା । ଶୁଣିଲା ସେ ରାଇଜର ରାଜକୁମାରୀ ଭାରି ଦୁଷ୍ଟ । ସେ କେଉଁଠୁ ଗୋଟିଏ ରାଜକୁମାରକୁ ଧରିଆଣି ତାକୁ ବନ୍ଦୀ କରି ରଖିଛି । ରାଜକୁମାର ସବୁବେଳେ ନିଦ ଔଷଧ ଖାଇ ଶୋଇରହିଛି ।

ସାନଭଉଣୀ ଯାଇ ସେଇ ରାଜାଘରେ ଚାକିରି କଲା । ରଜାଝିଅ ତାକୁ ନାନା କାମରେ ଖଟାଇଲା । ସେଥିପାଇଁ ବିଚାରୀର ଆଦୌ ଦୁଃଖ ନ ଥାଏ । ସେ ଖାଲି ଓର ଉଣ୍ଡୁଥାଏ, ଥରେ କେମିତି ରାଜକୁମାର ସହିତ ସାକ୍ଷାତ କରିବ ବୋଲି । ରାଜକୁମାରୀ ସାନଭଉଣୀର ସେବାରେ ଖୁସି ହୋଇ କହିଲା, ''ତୁ କ'ଣ ମାଗୁଛୁ ମାଗ ?''

ଝିଅଟି କହିଲା, ''ମୁଁ ଟିକିଏ ରାଜକୁମାରଙ୍କୁ ଦେଖିବି । ଶୁଣିଛି ସେ ସର୍ବଦା ଶୋଇ ରହିଛନ୍ତି । ତାଙ୍କପରି ସୁନ୍ଦର ମଣିଷ ଏ ରାଇଜରେ କେହି ନାହିଁ ।'' ରାଜକୁମାରୀ କିଛି ନ ଭାବି ତାକୁ ଅନୁମତି ଦେଲା ।

ସାନଭଉଣୀ ରଜାପୁଅ ଶୋଇବା ଘରକୁ ଯାଇ ଦେଖିଲା ସେ ହେଉଛି ସେଇ ଯୁବକ । ନିଘୋଡ଼ ନିଦରେ ଶୋଇଯାଉଛି । ସାନଭଉଣୀ ତା' ପାଖରେ ବସିଲା । ଯେତେ ପ୍ରକାରେ ଡାକିଲା, ତାର ନିଦ ଭାଙ୍ଗିଲା ନାହିଁ । ଶେଷକୁ ବିକଳ ହୋଇ କାନ୍ଦିବାକୁ ଲାଗିଲା । ତାର ଗରମ ଲୁହ ଯେମିତି ରଜାପୁଅ ମୁହଁରେ ପଡ଼ିଛି, ସେ ନିଦରୁ ଉଠିଲା ପରି ବସିପଡ଼ିଲା । ବହୁତ ଦିନ ପରେ ଝିଅଟିକୁ ଦେଖି ଖୁବ୍ ଖୁସି ହୋଇଗଲା ସେ । ଜାଣିପାରିଲା ତାରି ପାଇଁ ସତକୁ ସତ ସେ ଲୁହା ଜୋତାକୁ ଘୋସାରି ଘୋସାରି କେତେ ରାଇଜ ବୁଲିଛି । ମନେ ମନେ ତାକୁ ଧନ୍ୟବାଦ ଜଣାଇଲା । ଦୁହେଁଯାକ ଚୁପ୍‌ଚାପ୍ କଥାବାର୍ତ୍ତା ହେଲେ । ରାତିରେ ଯେତେବେଳେ ସମସ୍ତେ ଶୋଇଗଲେ, ସେତିକିବେଳେ ଘୋଡ଼ାଶାଳରୁ ଗୋଟିଏ ଘୋଡ଼ା ଫିଟାଇ ରାଜକୁମାର ସେଇ ଝିଅଟିକୁ ସାଙ୍ଗରେ ଧରି ସେ ରାଜ୍ୟ ଛାଡ଼ି ନିଜ ରାଜ୍ୟକୁ ପଳାଇ ଆସିଲା । ରାଜକୁମାର ବଡ଼ ଦୁଇଭଉଣୀଙ୍କୁ ଧରିନେଇ ଜେଲ ଦେଲା । ସାନଭଉଣୀକୁ ବାହା ହୋଇ ରାଜାଙ୍କ ଅନ୍ତେ ରାଜ୍ୟଶାସନ କଲା । ସମସ୍ତେ ନୂଆରାଣୀଙ୍କୁ ଧନ୍ୟ ଧନ୍ୟ କଲେ ।



# ରୂପା ସୁନ୍ଦରୀ ଓ ମ୍ୟାଜିକ୍ କଣ୍ଢେଇ



ଗଷ ଦେଶର ଛୋଟିଆ ଗାଁଟିଏ । ସେଇଠି ଦୁଇଜଣ ବୁଢ଼ାବୁଢ଼ୀ ବାସ କରୁଥିଲେ । ତାଙ୍କର ଗୋଟିଏ ଝିଅ ଥାଏ । ତାର ନାଁଟି ରୂପା । ସେ ରୂପ ଗୁଣରେ ଭାରି ସୁନ୍ଦର । ମାଛିକି 'ମଅ' ବୋଲି କହେନାହିଁ । ଗାଁରେ ସମସ୍ତେ ରୂପାକୁ ସୁଖ ପାଆନ୍ତି ।

ଦିନକର କଥା । ରୂପାର ବୋଉ ବଡ଼ ବାଧିକା ପଡ଼ିଲା । ବୁଢ଼ୀ ଜାଣିପାରିଲା ଯେ ସେ ଆଉ ଅଳ୍ପ ଦିନ ବଞ୍ଚିବ । ସେ ତାର ଝିଅ ରୂପାକୁ ପାଖକୁ ଡାକି ଚୁପ୍‌କରି କଣ୍ଢେଇଟିଏ ଦେଇ କହିଲା,

''ରୂପା ଲୋ ! ଏ ହେଲା ମ୍ୟାଜିକ୍ କଣ୍ଢେଇ । ସାବଧାନରେ ଲୁଚାଇ ରଖିଥିବୁ । ତୋର କିଛି ବିପଦ ଆପଦ ପଡ଼ିଲେ କଣ୍ଢେଇକି ଖାଇବାକୁ ଦେଇ ତୋର ଦୁଃଖ କହିବୁ । ସେ ତୋତେ ସାହାଯ୍ୟ କରିବ ।''

କିଛିଦିନ ପରେ ସତକୁ ସତ ରୂପାର ବୋଉ ଚିରଦିନ ପାଇଁ ଆଖି ବୁଜିଲା । ରୂପାର ବାପା ଆଉ ଜଣେ ସାବତ ମାଆ ଘରକୁ ଘରକୁ ଆଣିଲା । ସେ ଆସିଲା ଦିନୁ ରୂପାକୁ ସହିପାରୁ ନ ଥାଏ । ବିଶେଷକରି ରୂପାର ସୁନ୍ଦରପଣ ଦେଖି ତାର ହାଡ଼ ଜଳି ଯାଉଥାଏ । ସେଥିପାଇଁ ସେ ଯାଉଣୁ ଆସୁଣୁ ରୂପାକୁ କାମରେ ଖଟାଉଥାଏ । ସେ ଜାଣି ଜାଣି ରୂପାକୁ ସବୁତକ କଠିନ କାମ ଦେଉଥାଏ । ତାର ଫୁରୁସତ ବୋଲି କିଛି ନ ଥାଏ । ଗାଈ ଦୁହିଁ ନ ଥିବ, କହିବ କାଠ ହାଣ । କାଠ ହାଣୁ ହାଣୁ ବଜାର ସଉଦା ପାଇଁ ବରାଦ ଆସିବ । ବଜାର ସଉଦା ପରେ ରନ୍ଧାବଢ଼ା, ରନ୍ଧାବଢ଼ା ସରିଥିବ କି ନାହିଁ ବଗିଚାରେ ପାଣିଦେବାକୁ ଆଦେଶ ହୁଏ । ଏଇମିତି ସାରାଦିନ ସେ କାମରେ ଲାଗି ରହିଥାଏ । ରୂପା ସକାଳୁ ଗାଈ ଦୁହିଁଲାବେଳେ ମ୍ୟାଜିକ୍ କଣ୍ଢେଇକୁ ଦୁଧ ଟିକିଏ ପିଇବାକୁ ଦେଇ ତାର ଦୁଃଖ କହିବସେ । ମ୍ୟାଜିକ୍ କଣ୍ଢେଇ କହେ, ''ତୁ ଆମ୍ବଗଛ ମୂଳେ ଚୁପ୍‌ଚାପ୍ ଖେଳୁଥା, ମୁଁ ସବୁ କାମ କରିଦେଉଛି ।'' ସତକୁ ସତ ସବୁ କାମ ମ୍ୟାଜିକ୍ କଣ୍ଢେଇ କରିଦିଏ । ସାବତ ମା' ରୂପାକୁ ଗାଳିଦେବା ପାଇଁ କିଛି ସୁଯୋଗ ପାଉ ନ ଥାଏ । ସେଥିରେ ଦିନକୁ ଦିନ ରୂପାର ସୁନ୍ଦରପଣ ବଢ଼ୁଥିବାରୁ ତାର ଈର୍ଷା କହିଲେ ନ ସରେ ।

ଦିନେ ରୂପାର ବାପା ଦୁଇଦିନ ପାଇଁ ସହରକୁ ଗଲେ । ସାବତମା' ଦେଖିଲା ଏଇ ହେଉଛି ଅସଲ ସମୟ ଯେତେବେଳେ ସେ ରୂପାର ସର୍ବନାଶ କରିବ । ସଉତୁଣୀ ଝିଅଟା ତାର କାଳ ହୋଇଛି ।

ସାବତମା' ରୂପାକୁ ଡାକି କହିଲା, ''ଏଇ ଗାଁର ସୀମାରେ ଯେଉଁ ନଈ ଅଛି ତାରି ଆରପଟେ ଗୋଟିଏ ବଡ଼ ବଣ ଅଛି । ସେହି ବଣରେ କିମିଆ ବୁଢ଼ୀ ଘର କରି ରହୁଛି । ତୁ ଯାଇ ତାଠି ପାଖରୁ ନିଆଁ ଟିକିଏ ମାଗି ଆଣିବୁ ।''

ରୂପା ପିଲାଦିନୁ କିମିଆ ବୁଢ଼ୀ ନାଁ ଶୁଣି ଆସିଛି । ତା' ପାଖକୁ କେହି ଗଲେ ସେ ତାକୁ ହାଡ଼ ଗୋଡ଼ ସହିତ ଖାଇଦିଏ । ସେଠାରୁ କେହି ଜୀଅନ୍ତା ଫେରିବା ଜଣାନାହିଁ । ତେବେ ସାବତ ମାଆ ଡରରେ ସେ ଗାଁ ଛାଡ଼ି ବଣକୁ ଚାଲିବାକୁ ଲାଗିଲା । ବାଟରେ ତାକୁ ଡର ମାଡୁଥାଏ । ସେ କାନ୍ଦି କାନ୍ଦି ତାର ମ୍ୟାଜିକ୍ କଣ୍ଢେଇ ଆଗରେ ସବୁ କଥା କହିଲା । କଣ୍ଢେଇ କହିଲା, ''ତୁ ଦୁଃଖ କରନା । ମୁଁ ଅଛି । ତୋର କିଛି ବିପଦ ପଡ଼ିବ ନାହିଁ ।''

ଚାଲି ଚାଲି ସନ୍ଧ୍ୟାବେଳକୁ ଜଙ୍ଗଲ ମଝିରେ ଗୋଟିଏ ଘର ନିକଟରେ ପହଞ୍ଚିଲା । ସେ ଘରର ବାଡ଼ ତିଆରି ହୋଇଛି ମଣିଷ ହାଡ଼ରେ । ମଲା ମଣିଷର ଗୋଡ଼ରେ ଗେଟ୍ ଶୋଭାପାଉଛି । ଚାରିଆଡ଼େ କେବଳ କଙ୍କାଳମାଳ ଓ ହାଡ଼ ଗଦାଗଦା । ରୂପାର ଛାତିରେ ଛନକା ପଶିଲା । ସେ କେବଳ ମ୍ୟାଜିକ୍ କଣ୍ଢେଇକୁ ଭରସା କରି ଗେଟ ପାଖରେ ଠିଆ ହେଲା । ଚାହୁଁ ଚାହୁଁ ଗେଟ ମନକୁ ମନ ଖୋଲିଗଲା । ଘରର ଦୁଆର ଖୋଲିଗଲା । ରୂପା ଯେମିତି ଘରେ ପଶିଛି, ଗେଟ ଓ ଦୁଆର ମନକୁ ମନ ବନ୍ଦ ହୋଇଗଲା । କାହିଁ କୁଆଡ଼େ ଥିଲା କିମିଆ ବୁଢ଼ୀ ଆସି ସେଠାରେ ହାଜର । ରୂପାକୁ ଦେଖି ତାର ପାଟିରୁ ଖାଲି ଲାଳ ବୋହୁଥାଏ । ମନେ ମନେ ଭାବୁଥାଏ, ବଢ଼ିଆ କଅଁଳିଆ ପିଲାଟିଏ ହୋଇଛି । ପୋଡ଼ିକରି ଖାଇବି ।

ସେ ରୂପାକୁ ଧମକାଇ କହିଲା, ''ଏ ଘରୁ ପଳାଇ ଯିବାର ଉପାୟ ନାହିଁ । ତୋତେ ମୋର କିମିଆ କୁକୁର, କିମିଆ ବିଲେଇ, କିମିଆ ଗଛ ଟିକିଟିକି କରିପକାଇବେ ।'' ରୂପା ଏକଥା ଶୁଣି କାନ୍ଦି ପକାଇଲା । ସେ କିମିଆ ବୁଢ଼ୀକୁ ପ୍ରଣାମ କରି କହିଲା, ''ମୋ ବୋଉ ତୁମ ପାଖକୁ ପଠେଇଛି ନିଆଁ ଟିକିଏ ପାଇଁ ।'' କିମିଆ ବୁଢ଼ୀ ଗୋଟାଏ ବିକଟାଳ ହସ ହସିଲା । ସେ ହସିଲାବେଳେ ବୋଧ ହେଉଥାଏ ସତେ ଅବା ଆକାଶଟା ଭାଙ୍ଗିପଡୁଛି । କିମିଆ ବୁଢ଼ୀ କହିଲା, ''ମୁଁ ଶୋଇବାକୁ ଗଲି । ସକାଳୁ ତୋ କଥା ବୁଝିବି ।''

ବୁଢ଼ୀ ଶୋଇପଡ଼ିଲା ପରେ ରୂପା ମ୍ୟାଜିକ୍ କଣ୍ଢେଇ ଆଗରେ ସବୁକଥା କହିଲା । ତାକୁ ଖଣ୍ଡିଏ ରୁଟି ଖାଇବାକୁ ଦେଲା । ମ୍ୟାଜିକ୍ କଣ୍ଢେଇ ତାକୁ ପଳାଇଯିବାର ସମସ୍ତ

ଉପାୟ ବତାଇଦେଲା । ଗଲାବେଳେ ବୁଢ଼ୀ ଘରୁ ଗୋଟିଏ କିମିଆ ଖପୁରୀ ଧରି ଚାଲିଲା । ସେଥିରୁ ଆଲୁଅ ବାହାରୁଥାଏ । ରୂପା ବାହାରି ଗଲାବେଳେ କିମିଆ କୁକୁର ଆଉ ବିଲେଇ ବାଟ ଓଗାଳିଲେ । ସେ ସେମାନଙ୍କୁ ରୁଟି ଖାଇବାକୁ ଦେବାରୁ ସେମାନେ ଖୁସି ହୋଇ ବାଟ ଛାଡ଼ିଦେଲେ । କିମିଆ ଗଛରେ ସେ ଗୋଟିଏ ରିବନ ବାନ୍ଧିଦେଲା । ସେ ମଧ୍ୟ ବାଟ ଛାଡ଼ିଦେଲା ।

କିମିଆ ଖପୁରୀ ଆଲୁଅ ସାହାଯ୍ୟରେ ରୂପା ଜଙ୍ଗଲେ ଜଙ୍ଗଲେ ପଳାଉଥାଏ । କାଳେ କିମିଆ ବୁଢ଼ୀ ଉଠିପଡ଼ି ତାକୁ ପିଛା କରିବ, ଏଇ ଭୟ ତାର ଥାଏ ।

ରାତି ନ ପାହୁଣୁ ରୂପା ଯାଇ ନିଜ ବାଡ଼ି ଦୁଆରେ କବାଟ ବାଡ଼େଇଲା । ସାବତ ମାଆ ବିଚାରିଲା ବୁଢ଼ା ବୋଧହୁଏ ସହରରୁ ଫେରି ଆସିଛି । କିମିଆ ବୁଢ଼ୀ ରୂପାକୁ ନିଶ୍ଚୟ ଖାଇଥିବ । ତାର କଣ୍ଟା ଗଲା । ଖୁସି ମନରେ ଦୁଆର ଖୋଲିଦିଏ ତ ରୂପା ଠିଆ ହୋଇଛି । ହାତରେ ତାର କିମିଆ ଖପୁରୀର ଆଲୁଅ । ସେ ଆଲୁଅ ଯେମିତି ସାବତ ମାଆ ଉପରେ ପଡ଼ିଛି ସେ ଗୋଟାସୁଦ୍ଧା ଜଳି ପାଉଁଶ ହୋଇଗଲା ।

ରୂପା ଖପୁରୀକୁ ବାଡ଼ିରେ ମାଟି ଖୋଳି ପୋତି ପକାଇଲା । ରାତି ନ ପାହୁଣୁ ଗାଁ ଛାଡ଼ି ସହରକୁ ପଳାଇଗଲା । ସେଠାରେ ପହଞ୍ଚି ଜଣେ ବୁଢ଼ୀ ଘରେ ଆଶ୍ରୟ ନେଲା । ବୁଢ଼ୀ ରଜାଘରେ ସବୁଦିନ ଫୁଲ ଦେଉଥାଏ । ମ୍ୟାଜିକ୍ କଣ୍ଢେଇ ହାତରେ ରୂପା ଦିନେ ଟସର ସୂତାରେ ପାଟଟିଏ ବୁଣି ବୁଢ଼ୀକି ଦେଲା ବିକ୍ରି କରିବାପାଇଁ । ରଜାପୁଅ ଟସର ପାଟଲୁଗା ଦେଖି ତାର ଆଖି ଖୋସି ହୋଇଗଲା । ସେ ବୁଢ଼ୀକୁ କହିଲା, ଏଇ ସୂତାରେ ମୋ ପାଇଁ ସାର୍ଟ କନା ବୁଣି ଆଣିବୁ । ବୁଢ଼ୀ ରୂପାକୁ ଆସି ରଜାପୁଅର ବରାଦ କହିଲା । ପୁଣି ମ୍ୟାଜିକ୍ କଣ୍ଢେଇ ହାତରେ ରୂପା ସାର୍ଟ କନା ବୁଣି ପଠାଇଲା । ସାରା ରାଜ୍ୟରେ ଏହି ସୁନ୍ଦର କପଡ଼ା କେହି କେବେ ଦେଖି ନ ଥିଲେ । ରଜାଘରେ ସମସ୍ତେ କହିଲେ, ବୁଢ଼ୀର ଝିଅକୁ ଦେଖିବା ପାଇଁ । ରୂପା ଯେତେବେଳେ ରାଜସଭାରେ ପହଞ୍ଚିଲା, ସମସ୍ତଙ୍କର ଆଖି ଖୋସି ହୋଇଗଲା । ରଜାଘରେ ମଧ୍ୟ ଏଡ଼େ ସୁନ୍ଦରୀ ନ ଥିବେ । ରଜାପୁଅ କି ଆଉ ଛାଡ଼େ । ସେ ରୂପାକୁ ବାହା ହୋଇ ସୁଖରେ ରାଇଜ ପାଳନ କଲା । ସେଇଦିନୁ ରୂପାର ଦୁଃଖ ଗଲା । ସେ ରାଣୀ ହୋଇ ସୁଖରେ କାଳ କଟାଇଲା ।



# ଦଇବ ଦଉଡ଼ି ମଣିଷ ଗାଈ

ଗୋଟିଏ ଗାଁରେ ବୁଢ଼ାବୁଢ଼ୀ ଦୁଇଜଣ ଘର କରୁଥିଲେ । ତାଙ୍କର ଦୁଇଟି ପୁଅ ଝିଅ—ଝିଅଟିଏ ଷୋଳ ବରଷର ଆଉ ପୁଅଟିଏ ପାଞ୍ଚ ବରଷର । କିଛିଦିନ ଅନ୍ତେ ବୁଢ଼ାବୁଢ଼ୀ ମରିଗଲେ । ଭାଇଭଉଣୀ ଏବେ କିପରି ଚଳିବେ । ଘରେ ଯାହା ଅଳ୍ପ କିଛି ସମ୍ପତ୍ତି ଥିଲା ତହିଁରେ କିଛିଦିନ ଗୁଜୁରାଣ ଚଳିଗଲା । ତାପରେ ସାନଭାଇକୁ ସାଙ୍ଗରେ ଧରି ଝିଅଟି ସହରକୁ ଚାଲିଲା, କାମ ଖୋଜିବା ପାଇଁ ।

ମୁଣ୍ଡ ଉପରେ ପ୍ରଚଣ୍ଡ ଖରା । ରାସ୍ତାରେ ଚାଲି ହେଉ ନ ଥାଏ । କିଛି ବାଟ ଗଲାପରେ ସାନ ଭାଇଟିକୁ ଅତ୍ୟନ୍ତ ଶୋଷ କଲା । ସେ ଗୋଟିଏ ସ୍ଥାନରେ ଦେଖିଲା, ଗାଈମାନଙ୍କ ପାଇଁ ପାଣି ରଖାହୋଇଛି । ସେ ଭଉଣୀକୁ କହିଲା, ''ଅପା, ଶୋଷ କରୁଛି, ଏ ପାଣି ପଇବି ।'' ଭଉଣୀ ମନା କଲା, କହିଲା—''ଏ ପାଣି ପିଇଲେ ତୁ ବାଛୁରୀ ପାଲଟି ଯିବୁ ।'' ପିଲାଟି ଆଉ କ'ଣ କରିବ, ମନକୁ ବୁଝାଇ ଆଗକୁ ଚାଲିଲା ।

ପୁଣି କିଛିବାଟ ଗଲାପରେ ଘୋଡ଼ାମାନଙ୍କ ପାଇଁ ପାଣି ଥୁଆ ହୋଇଥିବା ଦେଖି ପିଲାଟି ପାଣି ପାଇଁ ଭଉଣୀକୁ ଅଳି କଲା । ଭଉଣୀ କହିଲା, ''ଏ ପାଣି ପିଇଲେ ତୁ ଘୋଡ଼ା ପିଲା ହୋଇଯିବୁ ।''

ଏଣେ ଖରା ସହି ହେଉନଥାଏ । ଶୋଷରେ ତଣ୍ଟି ଶୁଖି ଯାଉଥାଏ । ବଡ଼ କଷ୍ଟରେ ଅପାର କଥା ମାନି ବାଟ ଚାଲୁଥାଏ । କିଛିବାଟ ଗଲାପରେ ଦେଖାଗଲା ଛେଳିମାନଙ୍କ ପାଇଁ ପାଣି ଥୁଆ ହୋଇଛି । ଭଉଣୀକୁ ପଚାରିବାରୁ ସେ କହିଲା, ''ଏ ପାଣି ପିଇଲେ ତୁ ଛେଳିଛୁଆ ହୋଇଯିବୁ ।''

ପିଲାଟି ଶୋଷରେ ଏପରି ଛଟପଟ ହେଉଥିଲା ଯେ, ଆଉ ଭଉଣୀର କଥା କାନେଇବା ପାଇଁ ତର ସହିଲା ନାହିଁ । ସେ ଝଟକରି ଯାଇ ପାଣି ପିଇବା ମାତ୍ରେ ଧଳା ଛନଛନିଆ ଛେଳି ଛୁଆଟିଏ ହୋଇଗଲା । ଏକମାତ୍ର ଭାଇଟି ଛେଳିଛୁଆ ହୋଇଯିବାରୁ ଭଉଣୀଟି ଗଛମୂଳରେ ବସି କାନ୍ଦିବାକୁ ଲାଗିଲା । କେତେ ସମୟ ଏଇମିତି ଗଲାଣି ତାକୁ ଜଣାନାହିଁ । ତେଣେ ସନ୍ଧ୍ୟା ମାଡ଼ି ଆସୁଛି । ଏହି ସମୟରେ ସେହି ବାଟେ ତରତର ହୋଇ ଜଣେ ବଣିକ ଆସୁଥିଲେ; ଝିଅଟି କାହିଁକି ଏକୁଟିଆ ବସି କାନ୍ଦୁଛି ବୋଲି ପାଖରେ ଯାଇ ପଚାରିଲେ । ଝିଅଟି କାନ୍ଦି କାନ୍ଦି ତା' ଭାଇ କିପରି ଛେଳିଛୁଆ ହୋଇଯାଇଛି କହିଲା । ବଣିକ ଝିଅଟିର ସୁନ୍ଦର ରୂପ ଦେଖି ଭାରି ଖୁସି ହୋଇ କହିଲେ, ''ତୁମର ଯଦି ଆପତ୍ତି ନାହିଁ, ମୋତେ ବାହା ହୁଅ । ତୁମକୁ ଓ ଛେଳିଛୁଆକୁ ଅତ୍ୟନ୍ତ ଆଦରରେ ରଖିବି ।'' ଝିଅଟିର ତ ଅନ୍ୟ ଉପାୟ ନ ଥିଲା । ସେ ବଣିକକୁ ବାହା ହୋଇ ସୁଖରେ ରହିଲା । ଛେଳିଛୁଆଟି ଆଦର ଯତ୍ନ ପାଇ ବଢୁଥାଏ ।

କିଛିଦିନ ଚାଲିଗଲା । ବଣିକ ଘର ତଳ ବାରି ତେନ୍ତୁଳି ଗଛରେ ଗୋଟିଏ ଡାହାଣୀ ରହୁଥାଏ । ଝିଅଟିର ଏ ସୁଖ ସେ ସହିପାରିଲା ନାହିଁ । ଦିନେ ବଣିକ ସ୍ତ୍ରୀ ପୋଖରୀ କୂଳକୁ ଯାଇଛି, ସେ ଡାହାଣୀଟି ଗଛରୁ ଓହ୍ଲାଇ ତାକୁ ପାଣିରେ ମାଡ଼ିବସିଲା । ତା' ବେକରେ ଗୋଟିଏ ବଡ଼ ପଥର ବାନ୍ଧିଦେଲା । ସେ ନିଜେ ବଣିକର ସ୍ତ୍ରୀ ରୂପରେ ଘରକୁ ଚାଲିଆସିଲା । ଏସବୁ କଥା ସେଇ ଛେଳିଛୁଆଟି ଦେଖିଥାଏ । ଭଉଣୀର ଏପରି ଅବସ୍ଥା ଦେଖି ତାକୁ ଆଉ ଅନ୍ନ ଜଳ ରୁଚିଲା ନାହିଁ । ସେ ଏକପ୍ରକାର ଖିଆପିଆ ଛାଡ଼ିଦେଲା । ସବୁବେଳେ ଯାଇ ପୋଖରୀ କୂଳରେ କାନ୍ଦି କାନ୍ଦି ଗଡ଼ିଲା । ପୋଖରୀ ଭିତରୁ ଶବ୍ଦ ହେଉଥାଏ, ''ଭାଇରେ ମୋର ଉପାୟ ନାହିଁ । ମୋ ବେକରେ ବଡ଼ ପଥର ବୋଝ ବନ୍ଧା ହୋଇଛି ।''

ଛେଳିପିଲାଟି କାଳେ ଧରାପକାଇ ଦେବ ଏହି ଭୟରେ, ବଣିକର ସ୍ତ୍ରୀରୂପିଣୀ ଡାହାଣୀ ଦିନେ ବଣିକକୁ କହିଲା, ''ଏ ଛେଳିପିଲାଟା ବଡ଼ ଅବାଧ ହେଲାଣି, ତାକୁ ମାରିଦିଅ ।'' ବଣିକ ବଡ଼ ଆଶ୍ଚର୍ଯ୍ୟ ହେଲା । ସେ କହିଲା, ''ଛେଳି ପିଲାଟି ପରା ତୁମର ଭାଇ । ସେ ହତଭାଗ୍ୟକୁ ମାରିବା ପାଇଁ ତୁମର ମନ କିପରି ବଳୁଛି ?''

ଡାହାଣୀଟା ଯେମିତି ଜିଗର ଲଗାଇଲା, ଛେଳିଛୁଆ ଜୀବନ ବିକଳରେ ପୋଖରୀ କୂଳକୁ ଦଉଡ଼ିଗଲା । ସେଠାରେ ବସି କାନ୍ଦୁଥାଏ । ଡାହାଣୀ ଚାକର ପିଲାକୁ ପଠାଇଲା, ଛେଳିଛୁଆକୁ ଧରି ଆଣିବା ପାଇଁ । ଚାକର ପିଲା ପୋଖରୀ କୂଳରେ ପହଞ୍ଚି ଦେଖିଲା, ଛେଳିଛୁଆର ଆଖିରେ ଲୁହ । ପୋଖରୀ ଭିତରୁ ଶବ୍ଦ ହେଉଛି—''ଭାଇରେ ମୋର ଉପାୟ ନାହିଁ । ମୋ ବେକରେ ପଥର ବୋଝ ହୋଇଛି ।''

ଚାକର ପିଲାଟି ଦଉଡ଼ି ମାଲିକକୁ ଖବର ଦେଲା । ମାଲିକ ପୋଖରୀ କୂଳକୁ ଯାଇ ସବୁ ଶୁଣିଲା । ତାର ମନେ ହେଲା, ଏ ତାର ସ୍ତ୍ରୀର ସ୍ୱର । ତେବେ ଘରେ କିଏ ? ତାର ସନ୍ଦେହ ବଢ଼ିବାକୁ ଲାଗିଲା । ସେ କେଉଟ ଡାକି ଜାଲ ପକାଇବାରୁ ପାଣି ଭିତରୁ ତାର ସ୍ତ୍ରୀ ବାହାରି ଆସିଲା । ବେକରୁ ପଥର ଖୋଲି ଦିଆଗଲା । ତାକୁ ଡାକ୍ତରମାନେ ଲାଗି ଚିକିତ୍ସା କରିବାରୁ ତାର ହୋସ ଆସିଲା । ସେ ଗୋଟି ଗୋଟି କରି ସବୁ କଥା ସ୍ୱାମୀ ଆଗରେ କହିଲା । ବଣିକ ସଙ୍ଗେ ସଙ୍ଗେ ଗୁଣିଆ ଡାକି ତାର ଘରେ ସ୍ତ୍ରୀ ରୂପରେ ଥିବା ଡାହାଣୀକୁ ବାନ୍ଧି ପକାଇଲା । ଡାହାଣୀ ମାଡ଼ ଖାଇ କଳବଳ ହେଉଥାଏ । ବିକଳ ହୋଇ କହୁଥାଏ, ''ମୋତେ ଛାଡ଼ିଦିଅ । ମୁଁ ତୁମର ଛେଳିଛୁଆକୁ ମଣିଷ କରିଦେବି । ସତକୁ ସତ ଡାହାଣୀର ମନ୍ତ୍ରରେ ଛେଳିଛୁଆଟା ମଣିଷ ହୋଇଗଲା । ଭାଇକୁ ପାଇ ଝିଅର ଆନନ୍ଦ ଦେଖେ କିଏ ? ଡାହାଣୀ ତା' ବାଟରେ ଚାଲିଗଲା ।



# ମେଜିକ ମୁଦି ଓ ଗଣ୍ଡଭୈରବ ଚଢ଼େଇ



ଛୋଟ ଗାଁଟିଏ । ସେହିଠାରେ ଜଣେ ଗରିବ ଚାଷୀ ବାସ କରୁଥାଏ । ସମ୍ପତ୍ତି କହିଲେ ଛୋଟ ଚାଳଘରଟିଏ, ଜମି ଦୁଇମାଣ ଓ ହଳୁଟିଏ ବଳଦ । ପରିବାର ଭିତରେ ତାର ସ୍ତ୍ରୀ ଓ ତିନୋଟି ପୁଅ । ସେ ଚାଷ କରି ଯାହା ଅମଳ କରେ, ସେଥିରେ ପରିବାରକୁ ନିଅଣ୍ଟ ହୁଏ । ସେମାନେ ଦିନେ ଖାଇଲେ ଆଉ ଦିନେ ଉପବାସ ରହନ୍ତି । ଏଇମିତି ଦୁଃଖେ ସୁଖେ ଦିନ ଯାଉଥାଏ ।

ଦିନକର କଥା । ଚାଷୀ ଜଣକ ତାର ବଳଦ ନେଇ ବିଲରେ ହଳ କରୁଥାଏ । ସାନପୁଅଟି ହିଡ଼ ମୁଣ୍ଡରେ ବସି ଖେଳୁଥାଏ । ହଠାତ୍ ଆକାଶଟା ଅନ୍ଧାର ହୋଇଗଲା । ଅଦିନ ମେଘ ମାଡ଼ି ଆସିଲା ଭାବି ଚାଷୀ ଆକାଶକୁ ଚାହିଁଲା । ମେଘ ନାହିଁ, ଅଥଚ କ'ଣ ଗୋଟାଏ ଆକାଶକୁ ଘୋଡ଼ାଇ ଉଡ଼ି ଆସିଲା; ଆଉ ତାରି ବିଲ ଉପରେ ବସିପଡ଼ିଲା । ସେ ପକ୍ଷୀଟାର ଗୋଡ଼ ଦୁଇଟା ଯୋଡ଼ାଏ ବଡ଼ ଖମ୍ବ ପରି । ତା'ରି ପେଟ ତଳେ ବାପ, ପୁଅ, ବଳଦ ଦୁଇଟା ରହିଗଲେ ।

ଚାଷୀଟି ପ୍ରଥମେ କିଛି ଭାବିପାରିଲା ନାହିଁ । ପିଲାଦିନରୁ ବୁଢ଼ୀ ମା'ଠାରୁ ଶୁଣିଥିଲା, ଗଣ୍ଡଭୈରବ ଚଢ଼େଇ କଥା । କେବେହେଲେ ତ ଦେଖି ନଥିଲା । ବିଚାରିଲା, ଏ ଗଣ୍ଡଭୈରବ ଚଢ଼େଇ ନୁହେଁ ତ !! ଭୟରେ ତା'ର ଦେହ ଥରୁଥାଏ ଓ ଝାଳ ବୋହି ଯାଉଥାଏ ।

ସେ ଆହୁରି ଡରିଗଲା, ଯେତେବେଳେ ଦେଖିଲା ତାର ଥଣ୍ଟଟା ଗୋଟାଏ ଗୁଆ ଗଛ ପରି ଲମ୍ବା । ସେ ପୁଣି ମଣିଷ ପରି କଥା କହିଲା, ''ମୋର ପିଲାମାନେ ଭୋକିଲା

ଅଛନ୍ତି । କହ, ତୁ ତୋର ପୁଅକୁ ଦେବୁ ନାଁ ବଳଦ ଦୁଇଟାକୁ ଦେବୁ । ଚଞ୍ଚଳ ନିଷ୍ପତ୍ତି କର । ମୋର ସମୟ ନାହିଁ ଅପେକ୍ଷା କରିବାକୁ ।''

ଚାଷୀଟି ବିଚରା କ'ଣ କରିବ ? ବଳଦ ଦୁଇଟି ତାର ଆଶ୍ରା । ଚାଷରେ ସେମାନେ ସାହାଯ୍ୟ କରନ୍ତି, ଜଙ୍ଗଲରୁ କାଠ ବୋହି ଆଣନ୍ତି । ସେମାନଙ୍କୁ ଦେଇଦେଲେ ସେ ଚଳିବ କିପରି ? ଏଣେ ତା'ର ତିନି ପୁଅ । ଗୋଟିଏ ପୁଅ ଚଢ଼େଇ ପେଟରେ ଗଲେ ଆଉ ଦୁଇ ପୁଅ ଅଛନ୍ତି । ହେଲେ ସେ ସାନପୁଅ, ଗେଲବସର । ତାକୁ ଛାଡ଼ିଲେ ତା'ର ମା' ବଞ୍ଚିବ ନାହିଁ । ଏବେ କେଉଁ କୂଳକୁ ହେବ ? ମନଟା ଘାଣ୍ଟି ହେଉଥାଏ । ଶେଷରେ ବିଚାରିଲା, 'ନାହିଁ ବଳଦ ଦୁଇଟି ଯାଆନ୍ତୁ । ଏଡ଼େ ବଡ଼ ଚଢ଼େଇ ପାଇଁ ସାନପୁଅଟା ଯଥେଷ୍ଟ ହେବନାହିଁ ।' ଚାଷୀ ଅତ୍ୟନ୍ତ ଦୁଃଖରେ କହିଲା, ''ତାହାହେଲେ ତୁମେ ବଳଦ ଦୁଇଟି ନେଇପାର ।''

ଗଣ୍ଡଭୈରବ ଚଢ଼େଇ ଖୁସି ହୋଇଗଲା । କହିଲା, ''ତୋର ବିଚାର ଭଲ । ତୁ ନ ଦେଇଥିଲେ ମୁଁ ବଳାତ୍କାର କରି ନେଇଥାଆନ୍ତି । ତେବେ ତୋତେ ଏହା ବଦଳରେ ମୁଁ ଯଥେଷ୍ଟ ଧନ ଦେବି । ଆଗରେ ଯେଉଁ ପାହାଡ଼ମାଳା ଦେଖୁଛୁ, ତା'ରି ଆରପଟେ ରୂପେଲି ପାହାଡ଼ ଉପରେ ମୋର ଘର । ପକ୍ଷୀମାନଙ୍କର ରାଜା କେଉଁଠି ରହନ୍ତି ବୋଲି ପଚାରିଲେ, ସମସ୍ତେ ମୋ କଥା କହିଦେବେ ।''

ଏତିକି କହି ଗଣ୍ଡଭୈରବ ବଳଦ ଦୁଇଟାକୁ ଗୋଡ଼ ପଞ୍ଝାରେ ଧରି ଆକାଶରେ ଉଡ଼ିଗଲା ।

ମନ ଦୁଃଖରେ ଚାଷୀ ସାନପୁଅକୁ ଧରି ଘରକୁ ଫେରିଆସିଲା । ଚାଷୀର ସ୍ତ୍ରୀ ବଳଦ କୁଆଡ଼େ ଗଲେ ବୋଲି ପଚାରିଲା । ସବୁକଥା ଜାଣି ଘରେ କାନ୍ଦବୋବାଳି ପଡ଼ିଗଲା । ବଳଦ ବିନା ସମସ୍ତେ ଦୁଃଖରେ ଥାଆନ୍ତି । ଘରେ ଖାଇବା ପାଇଁ ଅଭାବ । ସମସ୍ତେ ଚିନ୍ତିତ ଥାଆନ୍ତି । ବଡ଼ପୁଅ କହିଲା, ''ଗଣ୍ଡଭୈରବ ବଳଦ ପାଇଁ ଧନ ଦେବ ବୋଲି କହିଛି । ମୁଁ ତାର ଘର ଖୋଜି ଆମର ପ୍ରାପ୍ୟ ଆଣିବାକୁ ଯିବି । ତାହାହେଲେ ଆମର ଅଭାବ ଆଉ ରହିବ ନାହିଁ ।''

ପ୍ରଥମେ ମା' ରାଜି ହେଉ ନ ଥିଲେ । ଗଣ୍ଡଭୈରବ ଚଢ଼େଇକୁ କେଉଁ ବିଶ୍ୱାସ ଅଛି ? କାଳେ ସେ ପୁଅକୁ ଖାଇଦେବ ! ଶେଷରେ ବାଧହୋଇ 'ହଁ' କଲେ । ଗଲାବେଳେ ତାର ବ୍ୟାଗ୍‌ରେ ବାଟରେ ଖାଇବା ପାଇଁ କିଛି ପିଠା ବାନ୍ଧିଦେଲେ ।

ବଡ଼ପୁଅ ବାଟ ଚାଲୁଥାଏ । କେତେ ବଣ, ବିଲ, ତୋଟା, ପଡ଼ିଆ, ପାହାଡ଼, ଘାଟୀ ଅତିକ୍ରମ କରିବାକୁ ପଡ଼ିଲା । ବାଟରେ କେତେ ଛୋଟ ବଡ଼ ନଈ ମଧ୍ୟ ପାରି ହେଉଥାଏ । ଶେଷରେ ଥକି ପଡ଼ିବାରୁ ଗୋଟିଏ ଗଛମୂଳେ ବିଶ୍ରାମ କଲା । ବ୍ୟାଗ୍‌ରୁ ପିଠା କାଢ଼ି ଖାଇବାକୁ ବସିଛି, ଗୋଟିଏ ଛୋଟ ଗଣ୍ଡଭୈରବ ଚଢ଼େଇ ଛୋଟେଇ

ଛୋଟେଇ ଆସି ତାହାରି ପାଖରେ ପହଞ୍ଚିଲା । କହିଲା, "ଭାଇ ! ମୋତେ ଖଣ୍ଡିଏ ପିଠା ଖାଇବାକୁ ଦିଅ । ବଡ଼ ଭୋକ କରୁଛି ।" ବଡ଼ପୁଅ ଏକଥା ଶୁଣି ରାଗିଗଲା । କହିଲା, "ତୋତେ ଭାଗ ଦେଲେ ମୁଁ ପୁଣି ବାଟରେ ଆଉ କ'ଣ ଖାଇବି ? ତୋ ବାଟ ତୁ ଦେଖ ।"

ଚଢ଼େଇଟି ଫୁର୍ କରି ଉଡ଼ି ପଳାଇଲା । ବଡ଼ପୁଅ ଆଶ୍ଚର୍ଯ୍ୟ ହେଲା । ତାହାହେଲେ ଚଢ଼େଇ ଛୋଟା ବୋଲି ଛଳନା କରୁଥିଲା । ଏଇମିତି ଚାଲି ଚାଲି ସେ ଜଙ୍ଗଲ ଭିତରେ ବାଟ ବଣା ହୋଇଗଲା । କୁଆଡ଼େ ଯିବ, ଆଉ ବାଟ ପାଇଲା ନାହିଁ ।

ଏଣେ ବଡ଼ପୁଅ ଫେରି ନ ଆସିବାରୁ ଚାଷୀ ଘରେ ସମସ୍ତେ ଦୁଃଖରେ ଥାଆନ୍ତି । ମଝିଆଁ ପୁଅ କହିଲା, "ମା, ମୋର ଯିବାର ବ୍ୟବସ୍ଥା କରିଦିଅ । ମୁଁ ଭାଇକୁ ଖୋଜିବି ଆଉ ଚଢ଼େଇ ରାଜାଠାରୁ ଆମର ପ୍ରାପ୍ୟ ମାଗି ଆଣିବି ।"

କିଛି ପିଠା ସାଙ୍ଗରେ ଧରି ମଝିଆଁପୁଅ ବାଟ ଚାଲିଲା । ବଣ, ପାହାଡ଼, ନଦୀ, ନାଳ ଅତିକ୍ରମ କରି ଚାଲିଥାଏ । ଶେଷରେ ଗୋଟିଏ ଗଛ ମୂଳରେ ଥକା ମାରିଲା । ମୁଣିରୁ ପିଠା କାଢ଼ି ଖାଇବାକୁ ଯାଉଛି, ପୂର୍ବର ସେହି ପକ୍ଷୀଟି ଛୋଟେଇ ଛୋଟେଇ ଆସି ପହଞ୍ଚିଲା ଓ ଖାଇବାକୁ ମାଗିଲା । ମଝିଆଁପୁଅ କହିଲା, 'ତୁ ମୋ ସହିତ ଭାଗ ହେଲେ ବାଟରେ ମୁଁ ଖାଇବି କ'ଣ ? ତୋ କଥା ହୋଇ ପାରିବ ନାହିଁ ।"

ପକ୍ଷୀଟି ଉଡ଼ି ଉଡ଼ି ଚାଲିଗଲା । ମଝିଆଁଭାଇ ଆଶ୍ଚର୍ଯ୍ୟ ହେଲା । ତାହା ହେଲେ ଚଢ଼େଇଟି ତା ସହିତ କପଟତା କରୁଥିଲା ! ସେ ମଧ୍ୟ ବଡ଼ଭାଇ ପରି ବଣ ଭିତରେ ବାଟ ଭୁଲି ବୁଲିବାକୁ ଲାଗିଲା ।

ବାପ ମାଆ ଏଣେ କିଛି ଦିନ ଅପେକ୍ଷା କଲେ । ଦୁଇ ପୁଅ ଫେରିଲେ ନାହିଁ । ସେମାନେ ବ୍ୟସ୍ତ ହେଉଥାଆନ୍ତି । ଦିନକୁ ଦିନ ଅଭାବ ବଢ଼ି ଚାଲିଥାଏ । ସାନପୁଅ କହିଲା, "ମା ମୋତେ ଅନୁମତି ଦିଅ ଯିବାକୁ । ମୁଁ ଭାଇମାନଙ୍କୁ ଖୋଜି କରି ନେଇ ଆସିବି ।" ପ୍ରଥମେ ବାପା ମା' ଅମଙ୍ଗ ହେଉଥିଲେ । କାଳେ କଅଣ ବିପଦ ପଡ଼ିବ । ଶେଷରେ ରାଜି ହେଲେ । ବାଟରେ ଖାଇବାପାଇଁ ପିଠା ବାନ୍ଧିଦେଲେ ।

କେତେ ବଣ, ପାହାଡ଼, ନଇ, ନାଳ ଅତିକ୍ରମ କରି ଶେଷରେ ଗୋଟିଏ ଗଛ ମୂଳରେ ସାନପୁଅ ବିଶ୍ରାମ କଲା । ଭୋକ ଲାଗିବାରୁ ପିଠା ଗଣ୍ଠିଲିଟି ଖୋଲିଲା । ଦେଖିଲା, ବଣ ଭିତରୁ ଛୋଟ ଗଣ୍ଡଭୈରବ ଚଢ଼େଇଟିଏ ଛୋଟେଇ ଛୋଟେଇ ଆସୁଛି । ସେ ଆସି ଖାଇବାକୁ ମାଗିଲା । ସାନ ପୁଅ ତାକୁ ଆଦର କରି ପାଖରେ ବସାଇଲା ଏବଂ ଖାଇବାକୁ ଦେଲା । ଚଢ଼େଇ ଖୁସି ହୋଇ ଖାଇଲା ଏବଂ କହିଲା, "ତୁମେ ଭାରି ଭଲ । ତୁମ ହୃଦୟରେ ଦୟାଭାବ ଅଛି । ତୁମେ ଅନ୍ୟର ଦୁଃଖ ବୁଝିପାର । ଏବେ ମୋତେ କହ, ଏହି ବଣ ରାଜ୍ୟକୁ ତୁମେ ଆସିଛ କାହିଁକି ?"

ସାନପୁଅ କହିଲା, ''ମୁଁ ତୁମମାନଙ୍କର ରାଜାଙ୍କ ନଅରକୁ ଯିବାପାଇଁ ଆସିଛି । ସେ ଆମ ବଳଦ ବଦଳରେ କିଛି ଧନ ଦେବେ ବୋଲି କହିଥିଲେ ।''

ଚଢ଼େଇଟି କହିଲା, ''ଚାଲ, ମୁଁ ତୁମକୁ ବାଟ କଢ଼ାଇ ନେଇଯିବି ଏବଂ ରାଜାଙ୍କ ନଅର ପାଖରେ ଛାଡ଼ିଦେବି । ହଁ ମନେରଖ, ତୁମଙ୍କୁ ରଜା ଯେତେବେଳେ ଧନ ମାଗିବା ପାଇଁ କହିବେ, ତାଙ୍କୁ ସୁନାରୂପା ମାଗିବ ନାହିଁ । କହିବ, ଆପଣ ରାତିରେ ଶୋଇଲାବେଳେ ମାଣ୍ଡିତଳେ ଯାହା ରଖନ୍ତି, ତାହା ହିଁ ଦିଅନ୍ତୁ ।''

ଦୁହେଁ ଚାଲି ଚାଲି ଶେଷରେ ନଅର ପାଖରେ ପହଞ୍ଚିଲେ । ରୂପେଲି ପାହାଡ଼ ଉପରେ ଚଢ଼େଇ ରାଜାଙ୍କର ନଅର ଦେଖି ଆଖି ଝଲସି ଯାଉଥାଏ । ସିଂହ ଦରଜାରେ ସିପାହୀମାନେ ଜଗିଥିଲେ । ସେମାନେ ସାନପୁଅକୁ ଅନ୍ଦରମହଲକୁ ନେଇଗଲେ । ବଡ଼ ହଲଟିଏ । ରୂପାର ସିଂହାସନରେ ଚଢ଼େଇମାନଙ୍କର ରାଜା ବସିଥାଆନ୍ତି । ପାତ୍ର ମନ୍ତ୍ରୀ ଘେରି କରି ଥାଆନ୍ତି । ସାନପୁଅ ଯାଇ ନମସ୍କାର କରି ନିଜର ଦୁଃଖ ଜଣାଇଲା ।

ଚଢ଼େଇ ରାଜା ପଚାରିଲେ, ''ତୁ ଏହି ନଅର ଦେଖିଲୁ କିପରି ?'' ସାନପୁଅ କହିଲା, ''ଜଣେ ଦୟାଳୁ ଲୋକ ମୋତେ ବାଟ ବତାଇ ଦେଲେ । ତେଣୁ ମୋର ଅସୁବିଧା ହୋଇନାହିଁ ।'' ଚଢ଼େଇମାନଙ୍କର ରାଜା କହିଲେ, ''ତାହା ହେଲେ ତୁ ମୋ ନଅରଯାକ ବୁଲି ଯାଆ । ଯାହା ମାଗିବୁ ଦେବି ।''

ସାନପୁଅ କହିଲା, ''ମଣିମା, ଆସିଲାବେଳେ ଆପଣଙ୍କର ନଅର ଦେଖିଆସିଛି । ଚାରିଆଡ଼େ ମଣିମାଣିକ ଭରପୂର ହୋଇ ରହିଛି । ଆମର ଗରିବ ଘରେ ସେ ଶୋଭା ପାଇବ ନାହିଁ । ମଣିମା ରାତିରେ ଶୋଇଲାବେଳେ ମାଣ୍ଡିତଳେ ଯେଉଁ ଜିନିଷଟି ରଖନ୍ତି, ତାହା ମୋର ଦରକାର ।''

ଗଣ୍ଡଭୈରବ ଚଢ଼େଇ ଚମକି ପଡ଼ିଲା । ଏହି ଗୁପ୍ତ କଥା ଏ ପିଲା ଜାଣିଲା କିପରି ? କଥା ବଦଳାଇ କହିଲା, ''ତାହା ସାମାନ୍ୟ ତମ୍ବା ମୁଦିଟାଏ । ତୋତେ ମୁଁ ମହଣ ମହଣ ସୁନା ଦେବି । ସୁଖରେ ରହିବୁ । ମାମୁଲି ତମ୍ବା ମୁଦିଟାଏ ତୋ'ର କ'ଣ ହେବ ?''

ସାନପୁଅ ଜିଦ୍ କଲା ସେହି ମୁଦିଟି ପାଇବା ପାଇଁ । ଗଣ୍ଡଭୈରବ ଆଗରୁ କଥା ଦେଇଛି । ତେଣୁ ବାଧ୍ୟ ହୋଇ ହାତରୁ ତମ୍ବା ମୁଦିଟି କାଢ଼ି ସାନପୁଅ ହାତରେ ଦେଲା ।

ସାନଭାଇ ମୁଦିଟି ହାତରେ ପିନ୍ଧି ଜଙ୍ଗଲବାଟେ ଫେରୁଥାଏ । ଭାବୁଥାଏ, ସେ କଅଣ ଠିକ୍ କାମ କଲା ? ଏହି ସାମାନ୍ୟ ମୁଦିଟା ସେ ଆଣିଲା କାହିଁକି ? ତା'ର ଏହା କେଉଁ କାମରେ ଲାଗିବ ? ବାଟରେ ସାଥୀ ଚଢ଼େଇଟି ତାକୁ ଠକି ଦେଇ ନାହିଁ ତ ?

ତାକୁ ଭୀଷଣ ଭୋକ ହେଲା । ଖାଲି ହାତକୁ ଘଷୁ ଘଷୁ ଭାବିଲା, ରାଜାଘର ଟେବୁଲ ଉପରେ କେତେ ପ୍ରକାର ଫଳ ଆଉ ମିଠା ଥୁଆ ହୋଇଥିଲା । ତା ଭାଗ୍ୟରେ କ'ଣ ତାହା ଅଛି ?

ଭାବି ସାରିଲା ପରେ ଅଚାନକ ତା ପାଖରେ ଟେବୁଲ ପଡ଼ିଗଲା, ଆଉ ତା ଉପରେ କେତେ ପ୍ରକାର ଫଳ ଆଉ ମିଠା । ସେ ତାଜୁବ ହୋଇଗଲା । ଜାଣିଲା, ଏହା ନିଶ୍ଚୟ ମେଜିକ୍ ମୁଦି । ଭାବିଲା, ମୋର ବାପା ବୋଉ, ଭାଇ ଦୁହେଁ ଆସିଲେ ଏକାଠି ଖାଆନ୍ତେ । ଆଖି ପିଛୁଳାକେ ସେମାନେ ଆସି ସେଠାରେ ପହଞ୍ଚିଗଲେ । ସମସ୍ତେ ଏକାଠି ହୋଇ ଖୁସି ହେଲେ ଓ ଖାଇଲେ ।

ଘରକୁ ଫେରି ସମସ୍ତେ ସୁଖରେ ରହିଲେ । ମେଜିକ୍ ମୁଦି ଯୋଗୁ ଆଉ ଧନର ଅଭାବ ରହିଲା ନାହିଁ । ଏଣିକି ଘରଦ୍ୱାର, ଜମିବାଡ଼ି ହସି ଉଠିଲା । ତାଙ୍କ ଦୁଆରୁ ଦୁଃଖୀରଙ୍କି ଆଉ କେହି ନିରାଶରେ ଫେରିଲେ ନାହିଁ ।

# ଅରକ୍ଷିତକୁ ଦଇବ ସାହା





ବାପ ମା ଛେଉଣ୍ଡ ଝିଅଟିଏ । ତା ନାଆଁଟି ଲଳିତା । ଦେଖିବାକୁ ଭାରି ସୁନ୍ଦରୀ । ପିଲାଟିଦିନୁ ଜଣେ ବଡ଼ଲୋକ ଘରେ ଆଶ୍ରୟ ନେଇଥାଏ । ଏଇ ଦୁଃଖିନୀ ଝିଅଟି ଉପରେ ଘର ମାଲିକାଣୀଙ୍କର ଆଦୌ ଦୟା ନଥାଏ । ସେ ତାକୁ ଦିନରାତି ଘର କାମରେ ଖଟାନ୍ତି । ଟିକିଏ ଦୋଷ ଦେଖିଲେ ନିର୍ଘାତ ପିଟନ୍ତି । ଅଥଚ ପେଟପୂରା ଗଣ୍ଡିଏ ଖାଇବାକୁ ଦିଅନ୍ତି ନାହିଁ । ଝିଅଟି ବିଚାରି ଭୋକ ଉପାସରେ ପଡ଼ି ସୁଦ୍ଧା କାନ୍ଦିବାକୁ ସାହସ ପାଏନାହିଁ । କାନ୍ଦିଲେ ଅଧିକ ମାଡ଼ । ଯେତେବେଳେ ଲଳିତାର ମନଦୁଃଖ ହୁଏ, ସେ ପଡ଼ିଆକୁ ଯାଇ କାଳିଗାଈ ବେକରେ ହାତ ପକାଇ କେତେ ଗେଲ ହୁଏ । ତାକୁ ନିଜର ଦୁଃଖ କହି ମନକୁ ବୁଝାଏ ।

ଏଣେ ଘରମାଲିକଙ୍କର ତିନିଟି ଝିଅ ମନଫୁଲାଣିଆ ଗୀତ ଗାଇ ବୁଲୁଥାଆନ୍ତି । କୁଟା ଖଣ୍ଡିକ ଦି'ଖଣ୍ଡ କରନ୍ତି ନାହିଁ । ସେମାନଙ୍କ ମଧ୍ୟରେ ପ୍ରଥମଟି ଏକ-ଆଖିଆ, ଦ୍ୱିତୀୟଟି ଦୁଇ-ଆଖିଆ, ତୃତୀୟଟି ତିନି-ଆଖିଆ । ସେମାନେ ବାପା-ବୋଉଙ୍କର କଥାରେ ନଥାନ୍ତି ।

ଲଳିତା ଯେତେ କାମ କଲେ ମଧ୍ୟ ମାଲିକାଣୀ ତା ଉପରେ ମୋଟେ ଖୁସି ହୁଅନ୍ତି ନାହିଁ । ତାକୁ ଅଧିକ କଷ୍ଟ ଦେବାପାଇଁ ବହୁତ କାମ ବରାଦ କରନ୍ତି । ସେ କରି ନପାରିଲେ ମାଡ଼ ଖାଇବା ସାର ହୁଏ ।

ଦିନେ ଲଳିତାକୁ ବରାଦ ହୋଇଥାଏ ମହଣେ ଗହମ ଚକିରେ ପେଷିବାପାଇଁ । ଏତେ ଗହମ କିପରି ପେଷିବ ? ସେ ପଡ଼ିଆକୁ ଯାଇ କାଳିଗାଈର କାନପାଖରେ ଚୁପ ଚୁପ କହି କାନ୍ଦି ପକାଇଲା । କାଳି ଗାଈ କହିଲା, "ତୁ ମୋ କାନଧରି ପିଠି ଉପରେ ଡେଇଁପଡ଼ । ତୋ କାମ ହୋଇଯିବ ।"

ସତକୁ ସତ, ସେତିକି କଲାବେଳକୁ ଚକିଟି ଆଖିପିଛୁଳାକେ ଗହମ ପେଷିଦେଇଗଲା ।

ଏତେ ଅଳ୍ପ ସମୟ ମଧ୍ୟରେ ଗହମ ପେଷା ଦେଖି ମାଲିକାଣୀ ଖୁସି ହୋଇପାରିଲେ ନାହିଁ ।

ଆଉ ଦିନକର କଥା । ମାଲିକାଣୀ ଲଳିତାକୁ ବରାଦ କଲେ—ଦିନକ ଭିତରେ ବାରହାତି ଚଦରଟିଏ ବୁଣିଦେବା ପାଇଁ । ମନଦୁଃଖରେ ଲଳିତା ଯାଇ କାଳି ଗାଈ ପାଖରେ ଫେରାଦ କଲା । ତାରି କଥାରେ ପୂର୍ବପରି ଗାଈର କାନ ଧରି ସେ ପିଠି ଉପରେ ଡେଇଁପଡ଼ିଲା । ଚାହୁଁ ଚାହୁଁ ତନ୍ତରେ ବାରହାତ ଚଦର ବୁଣି ହୋଇଗଲା । ମାଲିକାଣୀ ଚଦର ପାଇ ଖୁସୀହେବେ କ'ଣ, ରକ୍ତଚାଉଳ ଚୋବାଇବାକୁ ଲାଗିଲେ । ଆଜି ମଧ୍ୟ ସୁଯୋଗ ପାଇଲେ ନାହିଁ ତାକୁ ଗାଳିଦେବାକୁ । ସେ ତ ସବୁବେଳେ ଓର ଉଣ୍ଡୁଥାଆନ୍ତି ଲଳିତାକୁ କଷ୍ଟ କାମ ବରାଦ ଦେଇ ହରକତ କରିବାପାଇଁ ।

ଆଉ ଦିନେ ଗୋଟିଏ କାମ ବରାଦ କରିସାରି ମାଲିକାଣୀ ତାଙ୍କର ଏକଆଖିଆ ବଡ଼ଝିଅକୁ ଡାକି କହିଲେ, ''ତୁ ମା' ଏଇ ଲଳିତା ଉପରେ ନଜର ରଖ । ତା କାମ କିଏ କରି ଦେଉଛି ମୁଁ ଜାଣିବାକୁ ଚାହେଁ ।''

'ଏକ ଆଖିଆ' ଝିଅ ଲଳିତା ସାଙ୍ଗରେ ପଡ଼ିଆକୁ ଗଲା । ମା' କଥା ଭୁଲିଯାଇ ଖେଳିବାକୁ ଲାଗିଲା । ଲଳିତା ଜାଣିଲା, ଏକ-ଆଖିଆ ଆସିଛି ତାକୁ ପହରା ଦେବା ପାଇଁ । ସେ କାଳିଗାଈ ପାଖରେ କହିଲା, ''ଭଉଣୀ ଏକ-ଆଖିଆ, ଶୋଇପଡ଼ ।' ସତକୁ ସତ ଗଛମୂଳରେ ସେ ଶୋଇପଡ଼ିଲା । ଏତିକିବେଳେ କାଳିଗାଈ ତା କାମତକ କରିଦେଲା । ତେଣୁ ସେଦିନ ମାଲିକାଣୀ କିଛି ଜାଣିପାରିଲେ ନାହିଁ । ଦ୍ୱିତୀୟଦିନ ସେ ତାଙ୍କର ଦୁଇ ଆଖିଆ ଝିଅକୁ ବରାଦ କଲେ ଜଗିବା ପାଇଁ । ସେ ମଧ୍ୟ ବଡ଼ ଭଉଣୀ ପରି ଖେଳିଲା ବୁଲିଲା । କାଳିଗାଈର ନାଁ ଧରି ଲଳିତା କହିଲା, 'ଦୁଇ-ଆଖିଆ ଶୋଇପଡ଼ ।' ତାପରେ କାଳିଗାଈ ତାର କାମତକ କରିଦେଲା । ସେଦିନ ମଧ୍ୟ କିଛି ଜଣାପଡ଼ିଲା ନାହିଁ । ଶେଷ ଦିନ କାମ ବରାଦ କରି ମାଲିକାଣୀ ତାଙ୍କର ସାନ ଝିଅ ତିନି ଆଖିଆକୁ ବରାଦ କଲେ ଘଟଣା କ'ଣ ଜାଣି ଆସିବା ପାଇଁ । ତିନିଆଖିଆ ପଡ଼ିଆରେ ଖେଳୁଥାଏ । ଲଳିତା କାଳିଗାଈ ନାଁରେ କହିଲା, ''ଡାହାଣ ଆଖି ଶୋଇପଡ଼, ବାଁ ଆଖି ଶୋଇପଡ଼ ।' ସେ ତ ଶୋଇପଡ଼ିଲା, ମାତ୍ର ତାର ତୃତୀୟ ଆଖିଟି ଚେଇଁ ରହିଥାଏ । ସେ ଦେଖିଲା, ଲଳିତାର ସବୁ କାମ କାଳିଗାଈଟି କରିଦେଉଛି । ସନ୍ଧ୍ୟାବେଳେ ସେହି ଝିଅଟି ମା ପାଖରେ ଟିକିନିଖି ସବୁ ବର୍ଣ୍ଣନା କଲା ।

ଲଳିତା ଶୁଣିଲା, ତା'ଆରଦିନ ସକାଳେ କାଳି ଗାଈକୁ ସେମାନେ ଜୀବନରେ ମାରିଦେବେ । ସେ ଲୁଚିକରି ଯାଇ କାନ୍ଦି କାନ୍ଦି ଗାଈକୁ ସବୁ କଥା କହିଲା । କାଳିଗାଈ କହିଲା, ତୁ ବ୍ୟସ୍ତହୁଅ ନାହିଁ । ସେମାନେ ମୋତେ ମାରିଦେଲେ, 'ତୁ ମୋର ମାଂସତକ ଓ ହାଡ଼ତକ ମାଟିରେ ପୋତିପକାଇବୁ । ତୋର ବହୁତ ଉପକାର ହେବ ।'

ସତକୁ ସତ କାଳିଗାଈକୁ ମାଲିକାଣୀ ଲୋକ ଲଗାଇ ମାରିଦେଲେ । ଲଳିତା ଖୋଲା ପଡ଼ିଆରେ ମାଟି ଖୋଳି ସେ ଗାଈଟିକୁ ପୋତି ପକାଇଲା । କିଛିଦିନ ପରେ ସେଇଠି ଗ୍ଫୋଟିଏ ଆତଗଛ ଉଠିଲା । ଅଳ୍ପଦିନ ପରେ ଗଛଟି ପ୍ରଚୁର ଫୁଲ ଫଳରେ ମଣ୍ଡି ହୋଇଗଲା । ସେଇ ଗଛ ମୂଳେ ପୂର୍ବର ତିନି ଭଉଣୀ ଆଉ ଲଳିତା ଖେଳୁଥାଆନ୍ତି । ଜଣେ ରାଜପୁତ୍ର ସେଇବାଟେ ଘୋଡ଼ାଚଢ଼ି ଯାଉଥିଲେ । ସେ ଏପରି ସୁନ୍ଦର ଆତ ଗଛ ଦେଖି ଘୋଡ଼ା ଅଟକାଇଲେ । ସେହି ଚାରିଟି ଝିଅକୁ ବରାଦ କଲେ, ''ଯେ ମୋ ପାଇଁ ଭଲ ଆତଟିଏ ତୋଳି ଆଣିଦେବ, ମୁଁ ତାକୁ ପୁରସ୍କାର ଦେବି । ତିନି ଭଉଣୀ ଦଉଡ଼ିଗଲେ । ଆତ ଫଳ ତଳେ ଝୁଲୁଥିଲା । ତିନି ଭଉଣୀ ଯିବାରୁ ସବୁ ଫଳ ଉପରକୁ ଉଠିଗଲା । ଲଳିତା ଯେମିତି ହାତ ବଢ଼ାଇ ଦେଇଛି, ସଙ୍ଗେ ସଙ୍ଗେ ଫଳସବୁ ନଇଁ ଆସିଲା । ରାଜା ପୁଅତ ଏ ଦୃଶ୍ୟ ଦେଖି ବାବା ।

ସେ ଲଳିତାକୁ ବାହାହୋଇ ରାଜ୍ୟକୁ ନେଇଗଲେ । ଲଳିତା ରାଣୀ ହୋଇ ସୁଖରେ ରହିଲା ।



# ଛାୟାପଥ ଓ ପରୀରାଇଜ



ଶରତ ଆକାଶରେ ଏମୁଣ୍ଡରୁ ସେମୁଣ୍ଡ ଯାଏ କୋଟି କୋଟି ତାରା ଗୋଟିଏ ଧାଡ଼ିରେ ଶୋଭା ପାଉଥାଆନ୍ତି । ସତେ ଯେପରି ଆକାଶରେ ଦୁଧର ନଈଟିଏ ବହିଯାଉଛି । ସେଇଠାରେ ନଈର ଦୁଇ କୂଳରେ ଠିଆ ହେଲା ପରି ଦୁଇଟି ଉଜ୍ଜ୍ୱଳ ତାରା ଦେଖା ଯାଆନ୍ତି । ଗୋଟିଏ ଖୁବ ଧଳା ରଙ୍ଗର, ଆରଟି କିଞ୍ଚିତ୍ ମାଟିଆ । ଚୀନ ଦେଶରେ ଏହି ଦୁଇ ତାରାଙ୍କ ବିଷୟରେ ଚମତ୍କାର କଥାଟିଏ ପ୍ରଚଳିତ ଅଛି ।

ସେ ଅନେକ ଦିନ ତଳର କଥା । ଆକାଶର ଏହି ଛାୟା ପଥ ଆରପଟେ ହେଉଛି ପରୀ ରାଇଜ । ଏଇ ପରୀ ରାଇଜରେ ଜଣେ ରାଜା ଶାସନ କରୁଥାଆନ୍ତି । ସେ ବଡ଼ ସଉକିଆ ମିଜାସର ଲୋକ । ସବୁଦିନ ଭଲ ପୋଷାକ ପିନ୍ଧିବା ପାଇଁ ତାଙ୍କର ମନ । ତାଙ୍କ ପାଖରେ ଜଣେ ପରୀ ଥାଏ ଯେ କି ପ୍ରତିଦିନ ନୂଆ କିସମର ପୋଷାକ ତିଆରି କରି ରାଜାଙ୍କୁ ଯୋଗାଉ ଥାଏ । ରାଜା ପରୀଟିର ହାତବୁଣା ପୋଷାକ ପାଇ ଅତ୍ୟନ୍ତ ସୁଖୀ ଥାଆନ୍ତି ।

ଦିନେ ତାଙ୍କର ମନରେ ଖିଆଲ ହେଲା, ଏହି ପରୀଟିକୁ କିଛି ପୁରସ୍କାର ଦେବେ । ସେ ତାଙ୍କର ପରୀ ରାଣୀଙ୍କୁ ଡକାଇ ପଠାଇଲେ । ଖବର ପାଇ ପରୀରାଣୀ ସଙ୍ଗେ ସଙ୍ଗେ ଆସି ରାଜାଙ୍କ ପାଖରେ ହାଜର । ରାଜା ପଚାରିଲେ, ''ରାଣୀ, ତୁମେ କହ, କଣ ଏଇ ଝିଅଟିକୁ ଆମେ ପୁରସ୍କାର ଦେବା । ତାରି ହାତବୁଣା ପୋଷାକ ପିନ୍ଧି ମୁଁ ଅତ୍ୟନ୍ତ ସୁଖୀ ହୋଇଛି ।''

ରାଣୀ ବଡ଼ ସମସ୍ୟାରେ ପଡ଼ିଲେ । ପୁରସ୍କାରଟି ରାଜାଙ୍କ ମନଲାଖି ନ ହେଲେ ବିପଦ । ରାଜା ତ ଖିଆଲି ଲୋକ । କେତେବେଳେ କଣ ଆଦେଶ ଦେଇଦେବେ । ରାଣୀଙ୍କର ଉତ୍ତର ଦେବାରେ ବିଳମ୍ବ ହେଉଥିବାରୁ ରାଜା ଅତିଶୟ ବ୍ୟସ୍ତ ହୋଇ ପଡୁଥାଆନ୍ତି । ହଠାତ୍ ରାଣୀ କହିଲେ—''ମହାରାଜ ! ଆମ ସ୍ୱର୍ଗରେ ଅବା କେଉଁ ଜିନିଷର ଅଭାବ ଅଛି ଯେ ଆମେ ପରୀ ଝିଅଟିକୁ କିଛି ଉପହାର ଦେଇ ସୁଖୀ କରିପାରିବା । ମୋ ବିଚାରରେ ତାକୁ କିଛି ଦିନ ପାଇଁ ପୃଥିବୀକୁ ପଠାଇ ଦିଆଯାଉ । ସେ ସେଠାରେ ଛୁଟି ବିତାଇ ସ୍ୱର୍ଗକୁ ଫେରି ଆସିବ ।''

ପରୀ ରାଜାଙ୍କ ମନକୁ କଥାଟି ବେଶ୍ ପାଇଲା । ସେ ରାଣୀଙ୍କୁ ଆଦେଶ ଦେଲେ—"ଦେଖ ରାଣୀ, ମୋ ପରୀ ଝିଅର ଯେପରି କୌଣସି ଅସୁବିଧା ନ ହୁଏ । ସେ ସେଠାରେ ଭଲ ସାଥୀଟିଏ ଯେପରି ପାଏ ଦିନଗୁଡ଼ିକ ସୁଖରେ ବିତାଇ ଦେବାପାଇଁ ।"

ପରୀରାଣୀ ତାଙ୍କର ଜଣେ ପ୍ରିୟ ସଖୀକୁ ପୃଥିବୀକୁ ଆଗତୁରା ପଠାଇଦେଲେ । ସେ ଗୋଟିଏ ଗାଈ ରୂପରେ ଜଣେ ଚାଷୀ ପରିବାରରେ ଆଶ୍ରୟ ନେଇଥାଏ ।

ଚାଷୀ ପରିବାର କହିଲେ ଦୁଇଟି ଭାଇ । ବଡ଼ଭାଇଟି ବାହା ହୋଇଥାଏ । ତାଙ୍କର ସାମାନ୍ୟ କିଛି ଚାଷଜମି । ସେହି ଜମିରେ ଦୁଇଭାଇ ଦିନରାତି କାମ କରନ୍ତି । ଭାଉଜ ସେମାନଙ୍କୁ ସାହାଯ୍ୟ କରୁଥାଏ । ପରିବାରର ଚଳିବା ମୁତାବକ ପରୀ ଗାଈଟି ଦୁଧ ଦେଉଥାଏ । ଏଇମିତି ସେମାନେ ଚଳି ଯାଉଥାନ୍ତି ।

ଦୁଇ ଭାଇଙ୍କର ଭାରୀ ମନ ମିଳେ । ବଡ଼ଭାଇ ସାନଭାଇକୁ ଅତ୍ୟନ୍ତ ସ୍ନେହ କରୁଥାଏ । ଭାଉଜଟା ଟିକିଏ ହିଂସକୁଡ଼ି । ସେ ତାର ଦିଅରଟାକୁ ମନେ ମନେ ସହିପାରେ ନାହିଁ । କାରଣ ସେ ଜାଣିଥାଏ ଦିନେ ନା ଦିନେ ଏଇ ସମ୍ପତ୍ତି ଦୁଇଭାଇଙ୍କ ଭିତରେ ବଣ୍ଟୁରା ହେବ । ଦିଅର ଭାଗ ନେଇଯିବ ଏଇ କଥାଟି ଯେପରି ସେ ସହି ପାରୁନଥାଏ । ଭାଉଜର ଗୋଟିଏ ପୋଷା କୁକୁର ଥାଏ । ସେ କୁକୁରକୁ ଯେତିକି ଆଦରଯତ୍ନ କରି ଖାଇବାକୁ ଦିଏ, ଦିଅରକୁ କିମ୍ବା ସେ ପୋଷା ପରୀଗାଈଟିକୁ ମଧ ସେପରି ଦିଏନାହିଁ । ଓଲଟି ପୋଷା କୁକୁରଟା ସବୁବେଳେ ଗାଈଟାକୁ କାମୁଡ଼ି ଗୋଡ଼ାଉଥାଏ । ତେଣୁ ଗାଈଟି ଅତ୍ୟନ୍ତ ଦୁଃଖରେ ଥାଏ ।

ଦିନକର କଥା । ବଡ଼ଭାଇ କିଛି କାମରେ ଆଠଦିନ ପାଇଁ ସହରକୁ ଚାଲିଗଲା । ଭାଉଜ ତ ଏମିତି ଗୋଟିଏ ସୁଯୋଗ ଖୋଜୁଥିଲା । ସେ ବିଚାରିଲା ଏଇ ମଉକାରେ ଉପାୟଟାଏ କରିଦେବି ଯେ ଆଉ ତାର ଜମିତକ ଭାଗବଣ୍ଟୁରା ହେବନାହିଁ ।

ସେ ଯାଇ ପାହାଡ଼ ତଳୁ ବିଷମଞ୍ଜି ତୋଳି ଆଣିଲା । ତାକୁ ବାଟି ପିଠା ତିଆରି କଲା । ଦିଅର ଯେତେବେଳେ ବିଲରୁ କାମ କରି ଫେରିଆସିଲା, ସେହି ପିଠାତକ ଦିଅର ପାଇଁ ବାଢ଼ି ଦେଲା । ଦିଅର କାହିଁକି ଏତେ ଛନ୍ଦକପଟ ଜାଣିବ । ସେ ପିଠାତକ ହାତରେ ଧରି ବାରିଆଡ଼େ ଚାଲିଲା ପିଣ୍ଡାରେ ବସି ଖାଇବ ବୋଲି । ପିଣ୍ଡା ତଳକୁ ପରୀଗାଈଟି ବନ୍ଧା ହୋଇଥାଏ । କାଳେ କିଛି ଗୋଳମାଳ ହୋଇପାରେ ଭାବି ଭାଉଜ ପାଣି ଆଣିବା ବାହାନାରେ ନଈ କୂଳକୁ ଚାଲିଗଲା ।

ସାନଭାଇ ପରୀଗାଈଟିକୁ ଭାରୀ ଭଲ ପାଉଥାଏ । ସେ ତାକୁ ଆଦର କରି ପିଠାଟିଏ ଖାଇବାକୁ ଦେବାରୁ ଗାଈଟି ଅବିକଳ ମଣିଷ ପରି କଥା କହିଲା, "ମୋ କଥା ମାନି ଏ ପିଠା ଖାଅନାହିଁ ।"

ଗାଈଟା ମଣିଷ ପରି କଥା କହୁଛି ଶୁଣି ସାନଭାଇ ଚମକି ପଡ଼ିଲା । ଏ କି ଆଶ୍ଚର୍ଯ୍ୟ କଥା । ଗାଈଟା ପୁଣି କଥା କହୁଛି । ମାତ୍ର ତାର ତ ଆଉ ସନ୍ଦେହ ନାହିଁ । ସେ ଓଲଟି ପଚାରିଲା, ''ତେବେ ଏ ପିଠା ଆଉ କ'ଣ କରିବି ? ନ ଖାଇଲେ ଭାଉଜ ବିରକ୍ତ ହେବ ।''

ଗାଈ କହିଲା, ''ପିଠାତକ ଭାଉଜର କୁକୁରଟାକୁ ଦେଇଦିଅ ।'' କଥାମାନି ସାନଭାଇ କୁକୁର ଆଗରେ ପିଠାତକ ଅଜାଡ଼ି ଦେଲା । କୁକୁର ଯେମିତି ପିଠାତକ ଖାଇଦେଇଛି ସେ ସେଇଠି ମରି ଶୋଇଲା । ନଈ କୂଳରୁ ଭାଉଜ ଫେରିଆସି ଦେଖିଲା ଯେ, ଦିଅର ବଦଳରେ ତାର ପୋଷା କୁକୁରଟି ମରିଯାଇଛି । ଏହି ସମୟରେ ବଡ଼ଭାଇ ମଧ ସହରରୁ ଫେରିଆସିଲା ।

ସାନଭାଇ ଭାଉଜର ସମସ୍ତ କାର୍ଯ୍ୟ ଭାଇ ଆଗରେ ବର୍ଣ୍ଣନା କଲା । ଯେଉଁ ଘରେ ତାର ଜୀବନ ନିରାପଦ ନୁହେଁ, ସେଠାରେ ସେ ଆଉ ରହିବ ନାହିଁ । ତା' ଭାଗ ଜମିତକ ଅଲଗା କରିଦେଲେ ସେ ଅଲଗା ରହିବ ବୋଲି ଶୁଣାଇଦେଲା । ଏପରି କଥା ଶୁଣି ବଡ଼ଭାଇ ବଡ଼ଭାଉଜ ରାଗରେ ପାଚିଗଲେ । ସେ ଦୁହେଁ କହିଲେ, ''ତୋତେ ଜମିରୁ ଏକ ଛଦାମ ମିଳିବ ନାହିଁ । ତୋତେ ଆଜିଯାଏ ମଣିଷ କରିଆଣିଲି । ଆହୁରି ପୁଣି ଜମିରୁ ଭାଗ ଖୋଜୁଛୁ ?''

ଭାଉଜ କହିଲେ, ''ଯଦି ଅଲଗା ହେବାକୁ ଇଚ୍ଛା, ଗାଈଟାକୁ ନେଇ ବାହାରି ଯାଆ ।''

ସାନଭାଇ ଆଉ କ'ଣ କରିବ । କର୍ମ ଆଦରି ପରୀଗାଈଟିକୁ ପଘାରେ ବାନ୍ଧି ଗାଁ ପାରି ହୋଇ ଚାଲିଲା । ବାଟରେ କେତେ ନଈ ପଡ଼ିଲା । କେତେ ଗାଁ ଅତିକ୍ରମ କରି ସାନଭାଇ ଯାଇ ପହଞ୍ଚିଲା ଗୋଟିଏ ବଣ ଆରପଟ ପାହାଡ଼ ତଳେ । ସେଇଠି ସେ ଗଛମୂଳେ ବସି ମନେ ମନେ ଭାବିଲା ଏଇଠି ଘରଟିଏ କରି ରହିଲେ ହୁଅନ୍ତା । ପରୀଗାଈଟି ସାଙ୍ଗେ ସାଙ୍ଗେ ବଡ଼ ଘରଟିଏ ତିଆରି କରିଦେଲା । ସାନଭାଇ ପୁଣି କହିଲା—ବଳଦ, ହଳ ଆଉ ଚାଷ ସରଞ୍ଜାମ ହେଲେ ସେ ଚାଷକାମ ଆରମ୍ଭ କରିଦିଅନ୍ତା । ଚାହୁଁ ଚାହୁଁ ସେ ସବୁ ମଧ ପରୀଗାଈ ଯୋଗାଇଦେଲା ।

ଏଇମିତି କିଛିଦିନ ଚାଲିଗଲା । ତଳିଆ ଜମିରେ କେତେ ରକମର ଫସଲ ଆଦାୟ ହେଲା । ପରୀଗାଈଟି ତାର ଘରକଥା ସବୁ ବୁଝୁଥାଏ । ଦିନେ ସାନଭାଇ ମନକୁ ମନ କହିଲା, ଘରକୁ ବୋହୂଟିଏ ଆସନ୍ତା କି ତାର ଘରର ଦାୟିତ୍ୱ ସବୁ ନେଇପାରନ୍ତା ।

ପରୀ ଗାଈ କହିଲା, ''ପାଖ ନଈକୁ ସ୍ୱର୍ଗରୁ ପରୀମାନେ ଗାଧୋଇ ଆସନ୍ତି । ଲୁଚି କରି କାହାରି ଜଣକର ଶାଢ଼ୀ ଲୁଚାଇ ଆଣିଲେ ସେ ଘରଣୀ ହେବାକୁ ଆପତ୍ତି କରିବ ନାହିଁ ।''

ତା' ଆରଦିନ ସକାଳେ ସାନଭାଇକୁ ଆଉ କି ତର ସହେ । ସେ ନଈକୂଳରେ ଗଛ ଆଢୁଆଳରେ ଲୁଚିକରି ରହିଲା । ସ୍ୱର୍ଗର ପରୀ ରାଇଜରୁ ସେଇ ପରୀଝିଅଟି ରାଣୀଙ୍କ ଆଦେଶରେ ଏହି ନଦୀକୁ ଗାଧୋଇ ଆସିଥାଏ । ସାନଭାଇ ତାର ଲୁଗାକୁ ଲୁଚାଇ ଆଣିବାରୁ ସେ ତାକୁ ବିଭା ହୋଇ ଘରକୁ ଆସିଲା । ପରୀ ଗାଈ ସହିତ ପରୀକନ୍ୟାକୁ ଘରକୁ ଆଣି ସାନଭାଇ ବେଶ୍ ସୁଖରେ ଦିନ ବିତାଉଥାଏ । ପରୀକନ୍ୟାଟି ଯେତିକି ଦିନକୁ କଷ୍ଟ କରି ଆସିଥିଲା, ତାହା ପାର ହୋଇଗଲା ସିନା ପରୀଝିଅଟି ଆଉ ଫେରିବାର ନାଁ ଧରିଲା ନାହିଁ । ପରୀରାଇଜର ରାଜା ରାଗରେ ତାଙ୍କର ଦୂତକୁ ଆଦେଶ ଦେଲେ ପରୀକନ୍ୟାକୁ ଧରି ନେଇଯିବା ପାଇଁ । ଦୂତକୁ ଦେଖି ପରୀକନ୍ୟା ତାର ସ୍ୱାମୀଠାରୁ ବିଦାୟ ନେଇ ସ୍ୱର୍ଗ ଅଭିମୁଖେ ଚାଲିଲା । ଏଥିରେ ସାନଭାଇର ଆଉ କି ମନ ଘର ଧରେ । ସେ ମଧ୍ୟ ପରୀ ସ୍ତ୍ରୀର ପଛେ ପଛେ ଚାଲିଥାଏ । ସ୍ୱର୍ଗପୁର ପାଖେଇ ଆସିଲା । ପରୀ ରାଇଜର ରାଣୀ ଦେଖିଲେ ଛାର ମଣିଷର କେତେ ସାହସ । ସେ ସ୍ୱର୍ଗପୁର ପର୍ଯ୍ୟନ୍ତ ମାଡ଼ିଆସିଲାଣି । ସେ ତାଙ୍କର ଧଳାଲୁଗାକୁ ଆକାଶରେ ବିଛାଇ ଦେଲେ । ଚାହୁଁ ଚାହୁଁ ତାହା ଏକ ଦୁଧର ନଈ ପରି ବୋହିଗଲା । ନଈ ସେପଟେ ରହିଗଲା ସାନଭାଇ ଓ ନଈ ଏପଟେ ରହିଗଲା ପରୀକନ୍ୟା ।

ସେହିଦିନୁ ଉଭୟେ ନଈର ଦୁଇ କୂଳରେ ଠିଆ ହୋଇ ପରସ୍ପରକୁ ଅପେକ୍ଷା କରିଛନ୍ତି । ଦୂରରେ ଥିଲେ ମଧ୍ୟ ପାଖରେ ପାଇଲା ପରି ମନେ କରୁଛନ୍ତି । ସେଇ ଦୁଇଜଣଙ୍କୁ ଲୋକେ କହୁଛନ୍ତି ଛାୟାପଥର ଦୁଇଟି ଉଜ୍ଜ୍ୱଳ ତାରକା ବୋଲି ।

ଅସରନ୍ତି ତାଙ୍କର ଏ ଅପେକ୍ଷା ! ପରୀ ରାଇଜରେ ମଧ୍ୟ ଚହଳ ପକାଇ ଦେଇଛି ।

# ମନର ମୂଳେ ଏ ଜଗତ

ଅନେକ ଦିନ ତଳର କଥା । ଚୀନ ଦେଶରେ ଗୋଟିଏ ଛୋଟ ଗାଁର ଏ କାହାଣୀ । ସେଇଠି ରହୁଥାଆନ୍ତି ଗୋଟିଏ ଛୋଟ ଖପରଲି ଘରେ କାଠୁରିଆ, ତାର ସ୍ତ୍ରୀ ଏବଂ ତାଙ୍କର ଛୋଟ ଝିଅଟିଏ । ସେମାନେ ତ ଗରିବ ଥିଲେ । ହେଲେ ପାଖ ଜଙ୍ଗଲରୁ କାଠ ଆଣି କାଠୁରିଆ ତାର ବ୍ୟବସାୟ କରୁଥିଲା । ବାରିରେ ପରିବା ଆଦାୟ କରି ଦୁଃଖେ ସୁଖେ ଦୁଇ ପ୍ରାଣୀ ଚଳି ଯାଉଥିଲେ । ତାଙ୍କର କିଛି ବଳୁ ନ ଥିଲା କି କିଛି ଅଭାବ ପଡୁ ନ ଥିଲା ।

ଦିନକର କଥା । କାଠୁରିଆ କାଠ ଚିରୁଥାଏ । ତାରି ପାଖରେ ବସି ତାର ସ୍ତ୍ରୀ ଲୁଗା ସିଲାଇ କରୁଥାଏ । ଦୁହେଁଯାକ ଦୁଃଖ ସୁଖ ହେଉ ହେଉ କେତେ କଥା ପଡ଼ିଲା । କିପରି ପଡ଼ିଶା ଘରର ଲୋକେ କୋଠାଘରେ ରହୁଛନ୍ତି । ଆଉ କାହାର ଗାଡ଼ିମଟର ଅଛି । କେହି କେହି କେତେ ଜମିବାଡ଼ି ଅମଳ କରି ବେଶ୍ ସୁଖରେ ସମୟ ବିତାଉଛନ୍ତି । ଗାଁଯାକରେ ସେଇ କେବଳ ଦୁଃଖ ପାଉଛନ୍ତି ।

ଏତିକିବେଳେ କାଠୁରିଆର ସ୍ତ୍ରୀ କହିଲା, ''ଯଦି ପରୀରାଣୀକୁ ଦେଖନ୍ତି, ତାଙ୍କୁ କେତୋଟି ବର ମାଗନ୍ତି—ଯହିଁରେ ଆମର ଧନସମ୍ପତ୍ତି ବଢ଼ିଯାଆନ୍ତା ।''

ସତକୁ ସତ, ପାଟିରୁ କଥା ସରିଛି କି ନାହିଁ, ପରୀରାଣୀ ଘର ଭିତରେ ପଶିଗଲା । ପରୀରାଣୀକୁ ଦେଖି କାଠୁରିଆ ଆଉ ତାର ସ୍ତ୍ରୀ ଆଚମ୍ବିତ ହୋଇଗଲେ ! ପରୀରାଣୀ କାଠୁରିଆକୁ କହିଲେ, ''ତୁମକୁ ତିନିଗୋଟି ବର ଦେଲି । ତାର ସଦ୍ ଉପଯୋଗ କରିବ । ଆଉ ମୋତେ କିଛି ମାଗିବ ନାହିଁ ।''

ଏତିକି କହି ପରୀରାଣୀ ଉଭାନ ହୋଇଗଲା । କେଉଁଠୁ ଆସି କୁଆଡ଼େ ଗଲା, କେହି ଜାଣିପାରିଲେ ନାହିଁ ।

ବର ତିନୋଟି ପାଇ କାଠୁରିଆ ଆଉ ତାର ସ୍ତ୍ରୀ ବଡ଼ ଖୁସି ହୋଇଗଲେ । ଉଭୟଙ୍କ ଭିତରେ ବିଚାର ପଡ଼ିଲା—କ'ଣ ମାଗିଲେ ସେମାନେ ସୁଖରେ ରହିବେ ।

କାଠୁରିଆ ସ୍ତ୍ରୀ କହିଲା, ''ମୋର ମନ ହେଉଛି, ଆମେ ଗୁଡ଼ାଏ ଧନ ସମ୍ପତ୍ତି ମାଗିଦେବା । ଆମର ଆଉ ଦୁଃଖ ରହିବ ନାହିଁ । ଅନ୍ୟମାନେ ଆମକୁ ଦେଖି ଇର୍ଷା କରିବେ ।''

କାଠୁରିଆ କହିଲା, ''ତୋ ପରି ଓଲୁ କ'ଣ ଆଉ ଗଛରେ ଫଳନ୍ତି । ଧନ ମାଗିଲେ କେଉଁ ଦୁଃଖ ଚାଲିଯିବ ? ମୋର ଇଚ୍ଛା—ଭଲ ସ୍ୱାସ୍ଥ୍ୟ ମାଗିବା, ବହୁତ ଦିନ ବଞ୍ଚିବା । କେବେ କିଛି ରୋଗ ହେବନାହିଁ ।''

କାଠୁରିଆ ସ୍ତ୍ରୀ କହିଲା, ''ହଇଏ, ଲମ୍ବା ଆଇଷ ମାଗି ଲାଭ କ'ଣ ? ଅଭାବରେ ଷଢ଼ି ଷଢ଼ି ଜୀବନଟା ବୃଥା ହୋଇଯିବ ।''

ଏଇମିତି କଥା କଟାକଟି ହେଉ ହେଉ ଅନେକ ରାତି ହୋଇଗଲା । ଦୁହେଁଯାକ କୌଣସି ନିଷ୍ପତ୍ତିରେ ପହଞ୍ଚି ପାରିଲେ ନାହିଁ । ଶେଷରେ କଥା ହେଲେ ରାତିରେ ଶୋଇପଡ଼ିବେ । ସକାଳୁ ଉଠି ଯାହା ନିଷ୍ପତ୍ତି କରିବେ ।

ସେଦିନ ରାତିରେ ଆଉ କାଠୁରିଆ ସ୍ତ୍ରୀକୁ ନିଦ ନ ଥାଏ । ଭାବି ଚାଲିଥାଏ ସକାଳୁ ଉଠିଲେ ପରୀରାଣୀକୁ କେଉଁ ବରଟା ମାଗିବି ।

ସକାଳ ହେଲା । କୁଆ କୋଇଲି ରାବିଲେ । ଗାଈ ବଳଦ ଗୋଠକୁ ଚାଲିଲେ । ଛୁଆମାନେ ଦାଣ୍ଡେ ଦାଣ୍ଡେ ଖେଳି ବୁଲିଲେ । କାଠୁରିଆ ସକାଳୁ ଉଠି ତାର କାଠ କାମରେ ଲାଗି ଯାଇଥାଏ । କାଠୁରିଆ ସ୍ତ୍ରୀ ଆଉ ସମ୍ଭାଳି ରହୁଛି କେତେବେ !! ସେ ଚଟାପଟ ପରୀରାଣୀକୁ ଶୁଣାଇ କହିଦେଲା—''ହେ ପରୀରାଣୀ, ତୁମେ ତୁରନ୍ତ ଆମକୁ ମାଂସ ଖାଇବାକୁ ଦିଅ ।''

ସେମାନେ ତ ଗରିବ ଲୋକ । କେବେ ତ ମାଂସ ଖାଇବା ଭାଗ୍ୟରେ ଜୁଟେ ନାହିଁ । ମାଂସ ଖାଇବ ବୋଲି ତାର ଲୋଭ ହେବା ସ୍ୱାଭାବିକ । ତା' ପାଟିରୁ କଥା ବାହାରିଛି କି ନାହିଁ, ସାଙ୍ଗେ ସାଙ୍ଗେ ହାଣ୍ଡିଏ ହବ ମାଂସ ସେଠାରେ ଥୁଆ ହୋଇଗଲା ।

କାଠୁରିଆ ଯେମିତି ଏତକ ଦେଖି ଦେଇଛି ତାର ମୁଣ୍ଡକୁ ରାଗ ଚଢ଼ିଗଲା । ସେ ତାର ସ୍ତ୍ରୀକୁ ଗାଳି ଦେଇ କହିଲା—''ତୁ ଓଲି କ'ଣ କଲୁ !! ଆଉ ମୋଟେ ଦୁଇଟି ବର ରହିଲା । ମୋର ମନ ହେଉଛି ତୋର ମୂର୍ଖ ପଣିଆ ପାଇଁ ଏ ମାଂସତକ ତୋ ନାକରେ ଲାଗିଯାଉ ।''

ତାର ପାଟିରୁ କଥା ବାହାରି ନାହିଁ, କାଠୁରିଆ ସ୍ତ୍ରୀର ମୁହଁଟାଯାକ ମାଂସ ସାଲୁ ବାଲୁ ହୋଇ ଓହଳି ପଡ଼ିଲା, ସେ ଏବେ କ'ଣ କରିବ ! କାହାକୁ ମୁହଁ ଦେଖାଇବ ! କୁଆଡ଼େ ଅବା ଯିବ । ଏପରି ଭାବରେ ଚଳିବ କିପରି ? ମନେ ମନେ ଭାବିଲା ବରଂ ମରିଯିବା ଭଲ, ଏ ମୁହଁ ଆଉ କାହାକୁ ଦେଖାଇବ, ସେ ଖାଲି ବିକଳ ହୋଇ କାନ୍ଦିବାକୁ ଲାଗିଲା ।

ବର୍ତ୍ତମାନ କାଠୁରିଆ ତା'ର ଦୋଷ ବୁଝିପାରିଲା । ରାଗ ତ ବ୍ରହ୍ମ ଚଣ୍ଡାଳ । ଭୁଲ ତ କରିଦେଇଛି । ତାର ସ୍ତ୍ରୀକୁ ବୁଝାଇ କହିଲା—''ତୁ ବ୍ୟସ୍ତ ହୁଅନାହିଁ । ଆର ବରଟି ମାଗି ନିଏ, ଯେପରି ପୂର୍ବ ରୂପ ତୁ ଫେରି ପାଇବୁ ।''

ସେଇଆ ହେଲା । ପରୀରାଣୀ ତାକୁ ପୂର୍ବ ରୂପ ଫେରାଇ ଦେଲା ।

ସେଇଠୁ ଦୁହେଁ ବିଚାରିଲେ, ପରକୁ ଈର୍ଷା କରି ସିନା ସେମାନେ ଏପରି କଳବଳ ହେଲେ । ନଚେତ୍ ତାଙ୍କର କ'ଣ ଅବା ଅଭାବ ଥିଲା । ସେମାନେ ଦେହ ମିହନ୍ତ କରି ତ ବେଶ୍ ସୁଖରେ ଥିଲେ ।

ସେଇଦିନୁ ସେମାନେ ଆଉ କାହାରି ଚଳାଚଳ ଉପରେ ଆଖି ପକାଇ ଦୁଃଖ ପାଇନାହାନ୍ତି ।

ଓଓଓ

# ସାହସୀ ଚ୍ୟାଙ୍ଗ



ଚୀନ ଦେଶର କଥା । ସେଇଠି ଗୋଟିଏ ଗାଁରେ ଚ୍ୟାଙ୍ଗ ବୋଲି ପିଲାଟିଏ ଥିଲା । ପିଲାଦିନୁ ସେ ଭାରୀ ସାହସୀ । ଗାଁ ଥିଏଟରରେ ବେଳେ ବେଳେ ଅଭିନୟ କରେ ବୋଲି ତାକୁ ଗାଁ ଲୋକ ଅତ୍ୟନ୍ତ ସୁଖ ପାଆନ୍ତି । ଡର କ'ଣ ସେ ଜାଣେନାହିଁ । ଅନ୍ଧାର ରାତିରେ ଯେଉଁ ବାଟରେ କେହି କେବେ ଯାଆନ୍ତି ନାହିଁ, ଚ୍ୟାଙ୍ଗ ସେଠାରେ ନିଧଡ଼କ ଭାବରେ ବୁଲୁଥାଏ । ଗାଁର ନଈକୂଳ, ଶ୍ମଶାନ କିମ୍ବା ଅପନ୍ତରା ପଡ଼ିଆ ଉପରେ ସେ ରାତିଅଧରେ ଯାଇ ବୁଲି ଆସିବାକୁ ଆଦୌ କୁଣ୍ଠିତ ହୁଏନାହିଁ ।

ଦିନେ ସେ ରାତିରେ ଶ୍ମଶାନ ପାଖ ଗଛମୂଳରେ ବସିଛି । ଗୋଟିଏ ଭୂତ ଚ୍ୟାଙ୍ଗକୁ ଡରାଇବ ବୋଲି ଝିଅଟିଏ ହୋଇ ତା' ଆଗରେ ଠିଆ ହୋଇଗଲା । ଆଉ କିଏ ହୋଇଥିଲେ ସେଇଠି ଭେଟଣା ହୋଇ ଟଳି ପଡ଼ିଥାନ୍ତା । ମାତ୍ର ଅଧରାତିରେ ଏହି ନିର୍ଜନ ମଶାଣିରେ ଝିଅଟିଏ ଦେଖି ତାର ଆନନ୍ଦ କହିଲେ ନ ସରେ । ଚ୍ୟାଙ୍ଗ ନ ଡରିବାରୁ ଭୂତର ମନଟା ଖରାପ ହୋଇଗଲା । ସେ ସଙ୍ଗେ ସଙ୍ଗେ ଗୋଟିଏ ବିକଟାଳିଆ ବୁଢ଼ାଟିଏ ରୂପରେ ତା' ଆଗରେ ଠିଆ ହୋଇଗଲା । ଝୋଟପରି ତାର ବାଳ ଧଳା ହୋଇଯାଇଛି । ଦେହର ଚମ ଧୁଡୁଧୁଡୁ । ଦାନ୍ତ ବୋଲି ଗୋଟିଏ ନାହିଁ । ପାକୁଆ ପାଟିରେ ହସଟା ବଡ଼ ବିକଟାଳ ଦେଖାଯାଉଛି । ବୁଢ଼ାଟାକୁ ଦେଖି ଚ୍ୟାଙ୍ଗ ଡରିବ କ'ଣ ହସିବାକୁ ଲାଗିଲା । ସେ କହିଲା, ''ଏହାଠାରୁ ଭଲ ବେଶ ତ ଅଭିନୟ କଲାବେଳେ ମୁଁ ହୋଇଥାଏ । ଏ କି ବେଶ !'' ଭୂତଟା ରାଗିଗଲା । ସେ ସଙ୍ଗେ ସଙ୍ଗେ ଭୟଙ୍କର ରୂପରେ ବୁଢ଼ୀଟିଏ ହୋଇ ଠିଆ ହୋଇଗଲା । ବୁଢ଼ୀଟାର ଯେଉଁ ଅସନା ରୂପ, ପାକୁଆ ପାଟି, ଢେଗା ଢେଗା ଆଖି, ଏଡ଼େ ଏଡ଼େ ନଖ, ଘୋଡ଼ି ପରି ହସ, ଭାଲୁକୁଣି ପରି ମୁଣ୍ଡ, ଯେ କେହି ଦେଖିଲେ ଛାନିଆ ହୋଇଯିବ । ଭୂତ ଭାବିଲା ଏଥର ଟୋକାଟା ନ ଡରି ଯିବ କୁଆଡ଼େ । ମାତ୍ର ଚ୍ୟାଙ୍ଗ ପରି ପିଲାକୁ ଡରାଇବ କିଏ ? ସେ ତ ବୁଢ଼ୀକୁ

ଦେଖି କର କର ହୋଇ ହସିବାକୁ ଲାଗିଲା । କହିଲା, ହଇରେ ଭୂତ ଭାଇ, ଏ କି ବେଶ ! ମୁଁ ତ ଯାତ୍ରାରେ ଆହୁରି ଭଲ ବେଶରେ ସଜାଉଥିଲି । ଭୂତଟା ରାଗିଗଲା । ସେ ଚ୍ୟାଙ୍ଗକୁ କହିଲା, ''ଆଚ୍ଛା ତୁ ମୋତେ ଡରାଇପାରିବୁ ।''

ଚ୍ୟାଙ୍ଗ କହିଲା ଏଇ କଥା ତ ! ଦେଖ୍ କ'ଣ କରୁଛି । ଏତିକି କହି ଗୋଟିଏ ବେଲୁନ୍ ରବର ନେଇ ପାଟିରେ ଫୁଙ୍କିବାକୁ ଲାଗିଲା । ଦେଖୁ ଦେଖୁ ତାହା ଫୁଲିବାକୁ ଲାଗିଲା । ତାର ଆକାର ପ୍ରକାର ଦେଖି ଭୂତର ଆଖି ଖୋସି ହୋଇ ଯାଉଥାଏ । ହଠାତ୍ ବେଲୁନ୍‌ଟା ଫୁଲିଯାଇ ଢୋ କରି ଫାଟିଗଲା । ଭୂତ ଭାବିଲା, କ'ଣ କେଉଁଠୁ କିଏ ବାଣ ମାରିଦେଲା କି ? ସେ ଅତରଛରେ ସେ ସ୍ଥାନ ଛାଡ଼ି ପଳାଇଗଲା । ଚ୍ୟାଙ୍ଗ ତ ହସରେ ଫାଟି ପଡୁଥାଏ ।

ଆଉ ଦିନକର କଥା । ଦିନେ ସନ୍ଧ୍ୟାବେଳେ ଚ୍ୟାଙ୍ଗ ମଶାଣିରେ ଏକୁଟିଆ ବୁଲୁଛି । ହଠାତ୍ ଗୋଟିଏ ସମାଧି ପାଖରେ ଭୂତଟା ଆସି ଠିଆ ହୋଇଗଲା । ତାର ତ ସେହିଦିନୁ ରାଗ ଥାଏ । ସେ ତାର ଅନେକ ସାଥୀକୁ ଆଜି ଡାକି ଆଣିଥାଏ । ଭୂତକୁ ଦେଖି ଚ୍ୟାଙ୍ଗ୍ ଅବା କାହିଁକି ଡରିବ ! ସେ ତାକୁ ଦେଖିକରି ପଦେ ଥଟା କରି କହିଦେଲା । ଆଉ ଯାଏ କୁଆଡ଼େ । ଭୂତ ଆଉ ତାର ସାଙ୍ଗମାନେ ଚ୍ୟାଙ୍ଗ୍‌କୁ ମାଡ଼ିବସି ହାଡ଼ରେ ପିଟିବାକୁ ଲାଗିଲେ । ଚ୍ୟାଙ୍ଗ୍ ବିଚରା ମାଡ଼ ଖାଇ ଗୋଟିଏ ସମାଧି ଉପରେ ମୁହଁମାଡ଼ି ପଡ଼ିଗଲା । ସମାଧି ଭିତରେ ଆଉ ଗୋଟିଏ ଭୂତ ଥିଲା । ସେ ଚ୍ୟାଙ୍ଗ୍‌ର କଷ୍ଟ ଦେଖି ସହିପାରିଲା ନାହିଁ । ଏତେ ମାଡ଼ ଖାଇ ସୁଦ୍ଧା ଚ୍ୟାଙ୍ଗ୍ ଯେ ଭୂତମାନଙ୍କୁ ଦେଖି ଛାନିଆ ହେଉନାହିଁ, ଏଥିପାଇଁ ସମାଧିର ଭୂତଟି ତାକୁ ମନେ ମନେ ଧନ୍ୟବାଦ ଦେଉଥାଏ । ସେ ତାକୁ ଶୁଣାଇ କହିଲା, ''ଚ୍ୟାଙ୍ଗ୍ ତୁ ମୋତେ ପ୍ରତିବର୍ଷ ଆଜି ଦିନଟିରେ ଶ୍ରାଦ୍ଧ ଦେବୁ, ତେବେ ତୋତେ ମୁଁ ରକ୍ଷାକରିବି ।'' ଚ୍ୟାଙ୍ଗ୍ ତ ମାଡ଼ଖାଇ ହାଲିଆ ହୋଇଗଲାଣି । ସେ ସମାଧି ଭୂତ କଥାରେ ହଁ ଭରିଲା । ଏତିକିବେଳେ ସମାଧିରୁ ଭୂତଟି ଉଠି ଅନ୍ୟ ଭୂତମାନଙ୍କୁ ଯୁଦ୍ଧ କରି ତଡ଼ିଦେଲା ।

ଝାଡ଼ିଝୁଡ଼ି ହୋଇ ଚ୍ୟାଙ୍ଗ ଘରକୁ ଆସିଲା । ଚ୍ୟାଙ୍ଗ୍ ଯୋଗୁ ମଶାଣିରୁ ଭୂତମାନେ ଛାଡ଼ି ପଳାଇଲେ । ଗାଁ ଲୋକମାନେ ଆଉ ସେ ବାଟରେ ଯିବାକୁ ଡରିଲେ ନାହିଁ । ସେହିଦିନୁ ପ୍ରତିବର୍ଷ ଚ୍ୟାଙ୍ଗ୍ ସମାଧି ଭୂତକୁ ଶ୍ରାଦ୍ଧ ଦେଇଆସୁଛି ।



# କାଳିଆର କୁହୁକ

ସେ କାଳର କଥା । ଆଜକୁ ଚାରିଶହ ବର୍ଷ ପୂର୍ବେ ଓଡ଼ିଶାରେ ଗଜପତି ପ୍ରତାପରୁଦ୍ରଦେବ ଶାସନ କରୁଥିଲେ । ତାଙ୍କର ଜଣେ ମନ୍ତ୍ରୀ ଥିଲେ ସୋମନାଥ ମହାପାତ୍ର । ଏହି ମନ୍ତ୍ରୀଙ୍କର ପୁଅ ଭକ୍ତକବି ବଳରାମ ଦାସ ।

ଓଡ଼ିଶାରେ ବଳରାମ ଦାସଙ୍କୁ ଅବା କିଏ ନ ଜାଣେ । ତାଙ୍କ ଲିଖିତ ଜଗମୋହନ ରାମାୟଣ ଓଡ଼ିଆମାନେ କେତେ ଆଦରରେ ପଢ଼ିଥାଆନ୍ତି । ସେ ତ ଜଗନ୍ନାଥଙ୍କର ଭାରି ଭକ୍ତ ଥିଲେ । ତାଙ୍କୁ ଦର୍ଶନ ନ କଲେ ଜଳତୁଳସୀ ଛୁଉଁ ନ ଥିଲେ । ସେ ଭକ୍ତିବଳରେ ଜଗନ୍ନାଥଙ୍କୁ ଏପରି ମନାଇ ରଖିଥିଲେ ଯେ, ତାଙ୍କ ସହିତ କଥା ମଧ୍ୟ ହେଉଥିଲେ ।

ବଳରାମ ଥିଲେ ବଡ଼ ଖିଆଲି ଭକ୍ତ । ସେ ସବୁଦିନ ଲକ୍ଷ୍ମୀନାରାୟଣଙ୍କୁ ଦର୍ଶନ କରନ୍ତି । ଭକ୍ତିରେ ପ୍ରଣାମ ଜଣାନ୍ତି । ଲକ୍ଷ୍ମୀଠାକୁରାଣୀ ହେଉଛନ୍ତି ଟେରୀ । ବଳରାମ କହନ୍ତି ହେ ଟେରୀମା' ମୋର ଅପରାଧ କ୍ଷମା କର ।

ଲକ୍ଷ୍ମୀଙ୍କୁ ସବୁଦିନ ଟେରୀମା' ବୋଲି ଡାକିବାରୁ ସେ ବଳରାମଙ୍କୁ ଭୁଲ ବୁଝିଲେ । ସେ ବିଚାରିଲେ, ବଳରାମ ଜଗନ୍ନାଥଙ୍କର ଆପଣାର ହୋଇଛି ବୋଲି ଇନ୍ଦ୍ରଚନ୍ଦ୍ର କାହାକୁ ମାନୁନାହିଁ । ସତକୁ ସତ, ଜଗାବଳିଆ ଯାହାର ସହାୟ, ସେ ଆଉ କାହାକୁ ଡରିବ !!

ଦିନେ ସକାଳ ଆଳତିବେଳେ ବଳରାମ ଲକ୍ଷ୍ମୀଙ୍କୁ 'ଟେରୀ ମା' କହି ପ୍ରଣାମ କଲାବେଳେ ଲକ୍ଷ୍ମୀ ରାଗିଯାଇ ଅଭିଶାପ ଦେଲେ—''ବଳରାମ, ତୁ ମତେ ଅପମାନ କଲୁ, ତୋତେ କେବେହେଲେ ଶ୍ରୀକ୍ଷେତ୍ର ଯୋଗ ହେବନାହିଁ ।''

ସତକୁ ସତ ଅଭିଶାପ ଫଳିଗଲା । ଅଳ୍ପଦିନ ମଧ୍ୟରେ ମହାରାଜା ପ୍ରତାପରୁଦ୍ର କୌଣସି କାରଣରୁ ବଳରାମଙ୍କ ଉପରେ ଅସନ୍ତୁଷ୍ଟ ହୋଇ ପରୁଆନା ଜାରି କଲେ 'ବଳରାମଙ୍କୁ ପୁରୀରୁ ନିର୍ବାସନ ଦଣ୍ଡ ।'

ବଳରାମ ବଡ଼ ବିକଳ ହୋଇ ପ୍ରଭୁ ଜଗନ୍ନାଥଙ୍କୁ ଡାକିଲେ । 'କାଳିଆ ଠାକୁର, ଏ କ'ଣ କଲୁ ? ତୋତେ ଆଉ ଦର୍ଶନ କରିପାରିବି ନାହିଁ ।'

କାନ୍ଦି କାନ୍ଦି ବଳରାମ ପୁରୀ ଛାଡ଼ିଲେ । ପୁରୀଠାରୁ ଅଳ୍ପ ଦୂରରେ ଗୋଟିଏ ଗାଁରେ ବଳରାମ ଅତ୍ୟନ୍ତ ଦୁଃଖରେ ଦିନ ବିତାଉଥାଆନ୍ତି । କେବଳ ଜଗନ୍ନାଥଙ୍କୁ ଝୁରି ଝୁରି ତାଙ୍କର ଆଖିରୁ ଅନବରତ ଲୁହ ଝରୁଥାଏ । ଲକ୍ଷ୍ମୀ ମା' ଭୁଲ୍ ବୁଝି ତାଙ୍କୁ ଅଭିଶାପ ଦେଲେ । ସେ ପ୍ରଭୁ ଜଗନ୍ନାଥଙ୍କୁ ନିଜର ଦୁଃଖ ଜଣାଇ ସବୁବେଳେ ପ୍ରାର୍ଥନା କରୁଥାଆନ୍ତି ।

ପୁରୀରେ ତ ବାରମାସରେ ତେର ଯାତ୍ରା । ସେଇ ଗାଁ ପାଖ ଜଗନ୍ନାଥ ସଡ଼କରେ ଯାତ୍ରୀମାନେ ପୁରୀଯିବାର ଦୃଶ୍ୟ ସେ ଦେଖନ୍ତି । ବଳରାମଙ୍କର ମନ ମଧ୍ୟ ଉଡ଼ି ବୁଲୁଥାଏ

ଜଗନ୍ନାଥଙ୍କ ପାଖକୁ । ମାତ୍ର ତାଙ୍କର ଆଉ ଉପାୟ କ'ଣ ? ରାଜାଙ୍କର ଆଦେଶକୁ କିଏ ଅବା ଭାଙ୍ଗିପାରିବ ?

ଚିନ୍ତା ଖାଏ ଗଣ୍ଡି । ଦୁଃଖ ଆଉ ଅନୁତାପରେ ବଳରାମ ରୋଗରେ ପଡ଼ି ଶେଯ ଧରିଲେ । ଆଉ ଉଠି ବସିପାରିଲେ ନାହିଁ । ଏଥର ବଳରାମ ବୁଝିପାରିଲେ, ତାଙ୍କର ଦିନକାଳ ସରି ଆସୁଛି । ସେ ଏଣିକି ଅଧିକ କାଳ ବଞ୍ଚିବେ ନାହିଁ ।

ସେ କେବଳ ପ୍ରଭୁ ଜଗନ୍ନାଥଙ୍କୁ ଜଣାଣ କରୁଥାଆନ୍ତି—'ଚକାଡ଼ୋଳା ଜଗନ୍ନାଥ ! ମୋତେ ଏ ଦୁଃଖରୁ ଉଦ୍ଧାର କର । ଜୀବନର ଏହି ଶେଷ ଅବସ୍ଥାରେ ମୋତେ ଦୟାକରି ଦର୍ଶନ ଦିଅ । ମୋର ଆଉ କିଛି ମାଗୁଣି ନାହିଁ ।

ସେଇ ଶେଷଦିନଟି ଆସି ପହଞ୍ଚିଗଲା । ବଳରାମ ଦାସ ପ୍ରଭୁ ଜଗନ୍ନାଥଙ୍କୁ ଝୁରି ହେଉଥାଆନ୍ତି । ତେଣେ ରତ୍ନସିଂହାସନରେ ପ୍ରଭୁଙ୍କର ମନ ବିକଳ ହେଲା । ପ୍ରଭୁ ତ ଭକ୍ତର ଅଧୀନ । ସେ ଆଉ ସମ୍ଭାଳୁଛନ୍ତି କେତେବେଳେ ! ଲକ୍ଷ୍ମୀଦେବୀଙ୍କୁ ସାଙ୍ଗରେ ଧରି ପ୍ରଭୁ ଜଗନ୍ନାଥ ବଳରାମ ରହୁଥିବା ଗାଁରେ ଯାଇ ପହଞ୍ଚିଲେ । ବଳରାମଙ୍କୁ ଜଣାଗଲା, ତାଙ୍କ ଘରଟିରେ ହଠାତ୍ ଆଲୁଅ ବିଛାଡ଼ି ହୋଇପଡ଼ିଲା । ଚାରିଆଡ଼େ କେତେ ଧୂପ ଆଉ ଫୁଲର ମହକ । ବଳରାମ ଆଖି ଖୋଲିଲେ । ସତକୁ ସତ ତାଙ୍କର ପ୍ରଭୁ ଜଗନ୍ନାଥ ଆଉ ମା' ଶ୍ରୀଲକ୍ଷ୍ମୀ ଶେଯ ପାଖରେ ବସିଛନ୍ତି । ତାଙ୍କର ଜୀବନ ଧନ୍ୟ ହୋଇଗଲା । ଆଖି ହେଲା ପବିତ୍ର । କାଳିଆ ତାଙ୍କର ଡାକ ଶୁଣି ନିଜେ ପଳାଇ ଆସିଛି । ଜଗନ୍ନାଥ କେତେ ଆଦରରେ ବଳରାମଙ୍କ ଦେହରେ ହାତ ବୁଲାଇ ଆଣିଲେ । ବଳରାମଙ୍କର ସବୁ କଷ୍ଟ କୁଆଡ଼େ ଉଭେଇ ଗଲା ।

ଲକ୍ଷ୍ମୀଙ୍କି ଖାଲି ତାଟଙ୍ଗା ଲାଗୁଥାଏ । ସତରେ ପ୍ରଭୁ ତାଙ୍କର ବଳରାମଙ୍କୁ କେତେ ଆଦର ନ କରନ୍ତି । ଲକ୍ଷ୍ମୀ ପୂର୍ବକଥା ଭୁଲି ନ ଥିଲେ । କହିଲେ, ବଳରାମ ! ମୁଁ କ'ଣ କହିଥିଲି ! ତୋତେ ଆଉ ପୁରୀକ୍ଷେତ୍ର ଯୋଗ ହେବନାହିଁ ବୋଲି ।

ବଳରାମ ମୁରୁକେଇ ହସିଲେ । ଆପେ ଆପେ ହାତ ଦୁଇଟି ଯୋଡ଼ି ହୋଇ ଯାଉଥାଏ । କହିଲେ—''ପ୍ରଭୁ ହେ ! ମୋ ଟେରୀମା' ତଥାପି ଜାଣିପାରିଲା ନାହିଁ । ଯେଉଁଠାରେ ପ୍ରଭୁ ଜଗନ୍ନାଥ ଏବଂ ମାତା ଲକ୍ଷ୍ମୀ ବିରାଜମାନ, ସେଇ ତ ଶ୍ରୀକ୍ଷେତ୍ର । ପାଇଲି ନାହିଁ କ'ଣ ?''

ଏତିକି କହୁ କହୁ ସବୁଦିନ ପାଇଁ ତାଙ୍କର ଆଖି ମୁଦି ହୋଇଗଲା । ନୀଳାଚଳପତି ପ୍ରଭୁ ଜଗନ୍ନାଥ ଯାହାର ସହାୟ, ତାର କ'ଣ ମୁକ୍ତିର ଅଭାବ ଅଛି ?



# ଶୁକମୁନିଙ୍କ ଜନ୍ମକଥା

ଏକଦା ପାର୍ବତୀମାତା ଈଶ୍ୱରଙ୍କଠାରୁ ବ୍ରହ୍ମଜ୍ଞାନ ଶିକ୍ଷା କରିବା ପାଇଁ ଆଗ୍ରହ ପ୍ରକାଶ କଲେ । ଈଶ୍ୱର, ପାର୍ବତୀଙ୍କୁ ସାଙ୍ଗରେ ନେଇ ନୈମିଷ୍ୟାରଣରେ ପହଞ୍ଚିଲେ । ନୈମିଷ୍ୟାରଣ ହେଉଛି ଗୋଟିଏ ସୁନ୍ଦର ଓ ପବିତ୍ର ସ୍ଥାନ । ସେଠାରେ ମୁନି ଋଷିମାନେ ବାସ କରନ୍ତି । ଈଶ୍ୱର ପାର୍ବତୀ ଦୁହେଁ ସେହି ଅରଣ୍ୟର ଏକ ନିକାଞ୍ଚନ ସ୍ଥାନରେ ଯାଇ ଉପସ୍ଥିତ ହେଲେ । ସେଠାରେ ଗୋଟିଏ ବିରାଟ ଚମ୍ପାଗଛ ଥାଏ । ଚମ୍ପାଗଛରେ ଫୁଲଫୁଟି ଅତ୍ୟନ୍ତ ରମଣୀୟ ଦିଶୁଥାଏ । ଚମ୍ପାଫୁଲ ତ ସହଜେ ଶିବଙ୍କର ଅତି ପ୍ରିୟ । ତେଣୁ ସେହି ଗଛତଳେ ଈଶ୍ୱର ପାର୍ବତୀ ଦୁହେଁ ବସିଗଲେ । ଈଶ୍ୱର ପାର୍ବତୀମାତାଙ୍କୁ ବ୍ରହ୍ମଜ୍ଞାନ ବିଷୟରେ ଶିକ୍ଷା ଦେବାକୁ ଲାଗିଲେ ।

ସେହି ଚମ୍ପାଗଛର କୋରଡ଼ରେ କେଉଁ କାଳରୁ ଗୋଟିଏ ମୃତ ଶୁକପକ୍ଷୀର କଙ୍କାଳ ପଡ଼ି ରହିଥିଲା । ବ୍ରହ୍ମଜ୍ଞାନ ଶୁଣି ଶୁକପକ୍ଷୀର କଙ୍କାଳ ଉପରେ ମାଂସ, ଚର୍ମ ଓ ଡେଣା ଇତ୍ୟାଦି କଅଁଳି ଉଠିଲା । କିଛି ସମୟ ପରେ ତା' ଦେହରେ ଜୀବନର ସଞ୍ଚାର ହେଲା ।

ଜୀବନ ଲାଭ କଲାପରେ ପକ୍ଷୀଟି ନିଜର ସ୍ୱଭାବବଶତଃ ରାବ କରିବାକୁ ଲାଗିଲା । ଗଛ ଡାଳରେ ପକ୍ଷୀଟିଏ ରାବ କରିବାରୁ ଶିବ ବିଚଳିତ ହୋଇପଡ଼ିଲେ । କାରଣ ବ୍ରହ୍ମଜ୍ଞାନ ଅନ୍ୟ କେହି ଶୁଣିବା ଉଚିତ ନୁହେଁ ।

ସାମାନ୍ୟ ଶୁକପକ୍ଷୀ ବ୍ରହ୍ମଜ୍ଞାନର ଅଧିକାରୀ ହୋଇଗଲା । ଏହା ବଡ଼ ଅନ୍ୟାୟ । ସେ ଶୁକପକ୍ଷୀକୁ ଭସ୍ମ କରିଦେବେ ବୋଲି ବିଚାରିଲେ । ଶିବଙ୍କୁ ଦେଖି ପକ୍ଷୀ ଭୟରେ ପଳାଇଗଲା । ସେ ଆତ୍ମରକ୍ଷା କରିବା ପାଇଁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିପୁରରେ ଯାଇ ବୁଲିଆସିଲା । କେହି ଶିବଙ୍କ ଭୟରେ ତାକୁ ଆଶ୍ରୟ ଦେଲେ ନାହିଁ । ଶେଷରେ ଶୁକପକ୍ଷୀ ଯାଇ ବିଷ୍ଣୁଙ୍କ ପାଖରେ ଶରଣ ପଶିଲା । ଭଗବାନ ବିଷ୍ଣୁ ତ ସହଜେ ଅତ୍ୟନ୍ତ ଦୟାଳୁ । ସେ ଆଦରରେ ତାକୁ ଆଉଁସି ଦେଲେ । ବର ପ୍ରଦାନ କରି କହିଲେ, ''ତୁ ମହର୍ଷି ବ୍ୟାସଦେବଙ୍କ ପୁତ୍ର ହୋଇ ଜନ୍ମଗ୍ରହଣ କରିବୁ । ତୁ ହେବୁ ମହାଜ୍ଞାନୀ । ତୋରି ଜରିଆରେ ମୋର ଯଶଃ ଜଗତରେ ପ୍ରଚାରିତ ହେବ । ଆଜିଠାରୁ ଶୁକପକ୍ଷୀ ଜାତିରେ ଯେଉଁମାନେ ଜନ୍ମଗ୍ରହଣ କରିବେ, ସେମାନେ ସକାଳୁ ଉଠି ରାମକୃଷ୍ଣ ନାମ ଜପ କରିବେ । ଏହି ନାମ ଶୁଣି ଲୋକମାନେ ପାପସଂସାରରୁ ଉଦ୍ଧାର ପାଇବେ ।''

ବିଷ୍ଣୁଙ୍କଠାରୁ ବର ପାଇ ଶୁଆ ଅମର ହୋଇଗଲା । ଏଥର ମହାଦେବ ତାର ଅବା କଅଣ କରିବେ ? ସେ ତେଣୁ କ୍ରୋଧରେ ବିଶ୍ୱରୂପ ପ୍ରକାଶ କଲେ । ତାଙ୍କର ଜିଦ୍, ଯେମିତି ହେଉ ସେ ଶୁକପକ୍ଷୀକୁ ଧରି ଭସ୍ମ କରିବେ । ଶୁକ ବିଷ୍ଣୁଙ୍କୁ ସ୍ମରଣ କରିବାରୁ ସେ ତାକୁ କଳ୍ପବୃକ୍ଷକୁ ପଠାଇଲେ । ନିଶ୍ଚିତ ମନରେ ତାରି ଉପର ଶାଖାରେ

ନିର୍ଭୟରେ ଶୁକପକ୍ଷୀ ବସିଥାଏ ଏବଂ ପ୍ରଭୁଙ୍କର ନାମ ଜପ କରୁଥାଏ । ଈଶ୍ୱର ହାତ ବଢ଼ାଇଲେ ମଧ କଳ୍ପବୃକ୍ଷକୁ ତାହା ପାଏନାହିଁ । ବିଷ୍ଣୁଙ୍କ ପ୍ରଭାବରେ ବୃକ୍ଷ ବଢ଼ି ଚାଲିଥାଏ । ଈଶ୍ୱର ଅଷ୍ଟରତ୍ନଗିରି, ହୀରାପର୍ବତ, ନୀଳଗିରି, ମୋତିଗିରି ପ୍ରଭୃତି ପର୍ବତମାନଙ୍କୁ ରଖି ତା' ଉପରେ ଚଢ଼ିଲେ; ତଥାପି କଳ୍ପବୃକ୍ଷକୁ ତାଙ୍କର ହାତ ପାଇଲା ନାହିଁ । ଶେଷରେ ଈଶ୍ୱର ହତାଶ ହୋଇ ରହିଲେ ।

ଏହି ସମୟରେ ବ୍ୟାସଦେବଙ୍କ ପତ୍ନୀ ଶ୍ରୀୟାବତୀ ନଦୀରେ ସ୍ନାନ କରୁଥାଆନ୍ତି । ପାଟି ଆଁ କରି ପାଣି କୁଳୁ କୁଳୁ କରୁଥିବା ବେଳେ ଶୁକପକ୍ଷୀ ତାଙ୍କର ପାଟି ବାଟେ ଗର୍ଭରେ ଆଶ୍ରୟ ଗ୍ରହଣ କଲା । ଏତିକିବେଳେ ସେଠାରେ ଈଶ୍ୱର ଆସି ପହଞ୍ଚିଗଲେ । ଶ୍ରୀୟାବତୀ ପୁଅଟିଏ କାମନା କରି ଶିବଙ୍କୁ ପ୍ରାର୍ଥନା କଲେ । ଶିବ ସନ୍ତୁଷ୍ଟ ହୋଇ କହିଲେ, ''ତୁମେ ପୁତ୍ରବତୀ ହୁଅ । ମହାଜ୍ଞାନୀ ଶୁକଙ୍କୁ ତୁମେ ପୁତ୍ର ରୂପେ ଲାଭ କର । ସେ ଏଣିକି ଶୁକମୁନି ଭାବରେ ପରିଚିତ ହେବେ ଏବଂ ସଂସାରରେ ପ୍ରଭୁଙ୍କର ନାମ ପ୍ରଚାର କରିବେ ।''

ଶେଷରେ ତାହାହିଁ ହେଲା । ଶୁକପକ୍ଷୀଟି ବ୍ୟାସଦେବଙ୍କ ପୁତ୍ର ରୂପେ ଜନ୍ମହେଲା । ଏହି ପୁତ୍ରର ନାମ ହେଲା ଶୁକଦେବ । ଶୁକଦେବ ଥିଲେ ମହାନ୍ ବ୍ରହ୍ମଜ୍ଞାନୀ । ସଂସାରରେ ତାଙ୍କ ଯଶ ଅକ୍ଷୟ ହୋଇ ରହିଛି ।



# ସଙ୍ଗୀତର ଭେଳିକି

ଗ୍ରୀସ ଗୋଟିଏ ପ୍ରାଚୀନ ଦେଶ । ଏହି ଦେଶରେ କେଉଁ କାଳରେ ଅରଫିଅସ ନାମରେ ଜଣେ ଅଦ୍ଭୁତ ଲୋକ ବାସ କରୁଥିଲେ । ସେ ରାଜ୍ୟରେ ତାଙ୍କ ପରି କେହି ମଧୁର ସ୍ୱରରେ ବୀଣା ବଜାଇ ପାରୁନଥିଲେ । ବୀଣା ବଜାଇବା ଥିଲା ତାଙ୍କର ଏକ ସଉକ । ବୀଣା ବଜାଇ ସେ ଗୀତ ଗାଇଲେ ଗଛ ଲତା ଜାଗି ଉଠୁଥିଲେ । ମଣିଷ ଅବା କେତେ ମାତର । ଏହି ସଙ୍ଗୀତ ଶୁଣିଲେ ମଣିଷ ଦୁଃଖ ଶୋକ ଭୁଲି ଯାଉଥିଲେ ।

ଅରଫିଅସଙ୍କର ସ୍ତ୍ରୀ ଭାରି ସୁନ୍ଦରୀ । ତାଙ୍କର ନାଁ ହେଉଛି ଉରିଡ଼ାଇସ୍ । ଦୁହେଁ ଗୀତ ଗାଇ ବୀଣା ବଜାଇ ଆନନ୍ଦରେ ଚଳୁଥାନ୍ତି । କେହି କାହାକୁ ଦଣ୍ଡେ ଛାଡ଼ିପାରନ୍ତି ନାହିଁ ।

ଦିନକର କଥା । ସାହିପଡ଼ିଶାର କେତେଜଣ ଝିଅ ବୋହୂଙ୍କ ମେଳରେ ଉରିଡ଼ାଇସ୍ ପାଖରେ ଥିବା ଗୋଟିଏ ବଣରେ ବୁଲୁଥିଲା । ବଣରେ ବୁଲୁ ବୁଲୁ ଅଜାଣତରେ ଉରିଡ଼ାଇସ୍ ପଡର ଗଦାତଳେ ଥିବା ଗୋଟିଏ ସାପକୁ କୁଦି ଦେବାରୁ ସେ ତାକୁ ଚୋଟ ମାରିଲା । ଉରିଡ଼ାଇସ ସଙ୍ଗେ ସଙ୍ଗେ ସେହି ବଣ ବାଟରେ ମରିଶୋଇଲା ।

ବିଚରା ଅରଫିଅସ ନିଜ ସ୍ତ୍ରୀ ପାଇଁ କାନ୍ଦି କାନ୍ଦି ଦିନ କାଟିଲା । ଏହି ଦୁଃଖ ବେଳେ ଯଦି ବୀଣା ବଜାଇ ସେ ଗୀତ ଗାଉଥିଲା, ତେବେ ସେହି କରୁଣ ଗୀତ ଶୁଣି ପାହାଡ଼, ଝରଣା, ଗଛଲତା ସୁଦ୍ଧା ଦୁଃଖରେ କାନ୍ଦି ପକାଉଥିଲେ । ଅରଫିଅସ ପକ୍ଷରେ ଏକାକୀ ଦିନ କାଟିବା ବଡ଼ ଅସମ୍ଭବ ହେଲା । ସେ ନିଜର ସ୍ତ୍ରୀକୁ ଖୋଜିବା ପାଇଁ ପାତାଳପୁରକୁ ଚାଲିଲା । ଲୋକ ମରିଗଲେ ସେହିଠାରେ ରହନ୍ତି ବୋଲି ସେ ଶୁଣିଥିଲା । ସେଠାରେ ରାଜା ପ୍ଲୁଟୋ ତାଙ୍କର ରାଣୀ ପ୍ରଃସ୍ୱରିନ ସହିତ ରାଜତ୍ୱ କରୁଥିଲେ ।

ପାତାଳପୁର ବଡ଼ ଭୟଙ୍କର । ସେଠାକୁ ଯିବାକୁ ହେଲେ ଏକ ଅନ୍ଧାରିଆ ନଈ ପଡ଼େ । ସାଧାରଣ ମନୁଷ୍ୟ ଏହି ନଈ ପାରିହେବା ସମ୍ଭବ ନୁହେଁ । ମଲା ମଣିଷକୁ ପ୍ଲୁଟୋଙ୍କର ଦୂତ ଚାରୋନ ଅନ୍ଧାରିଆ ନଈରେ ପାରି କରାଇ ପାତାଳପୁରକୁ ନେଇଯାଏ ।

ନିଜର ବୀଣାଟିକୁ କାନ୍ଧରେ ପକାଇ ଅରଫିଅସ ସେହି ଅନ୍ଧାରିଆ ନଈକୂଳରେ ପହଞ୍ଚିଲା । ଚାରୋନ ତାକୁ ପାତାଳପୁରକୁ ନେବାପାଇଁ ରାଜି ହେଲାନାହିଁ । ମଲା ଲୋକ ନ ହେଲେ ତାକୁ ପାରି କରିବା ପାଇଁ ପ୍ଲୁଟୋଙ୍କର ଆଦେଶ ନାହିଁ । ସେ ନିଜର ସେହି ଅଦ୍ଭୁତ ବୀଣା ବଜାଇ ଏପରି ଗୀତ ଗାଇଲା ଯେ ଚାରୋନର ହୃଦୟ ତରଳିଗଲା । ତାଙ୍କ ଆଖିରୁ ଲୁହ ଗଡ଼ିପଡ଼ିଲା । ସେ ଆଉ କିଛି ନ ବିଚାରି ତାକୁ ନେଇ ନଈ ପାରି କରିଦେଲେ ।

ଅନ୍ଧାରିଆ ନଈ ସିନା ପାରି ହୋଇଗଲା, ମାତ୍ର ରାଜା ପ୍ଲୁଟୋଙ୍କ ସିଂହଦ୍ୱାରଠାରେ ଏକ ଭୟଙ୍କର କୁକୁର ଅରଫିଅସକୁ ବାଟ ଓଗାଳିଲା । ସାମାନ୍ୟ ଆଗେଇଲେ ସେ ଟିକି

ଟିକି କରିଦେବ । ଅରଫିଅସକୁ ଦେଖି ସେ ଚିତ୍କାର କରି ତା' ଆଡ଼କୁ ମାଡ଼ିଆସିଲା । କାଳବିଳମ୍ବ ନ କରି ଅରଫିଅସ ବୀଣା ବଜାଇବାକୁ ଲାଗିଲା । ମନ୍ତ୍ରପାଣି ପଡ଼ିଲାପରି କୁକୁରଟି ସେଇଠି ବସି ପଡ଼ିଲା । ସେ ଅତ୍ୟନ୍ତ ବିହ୍ୱଳ ହୋଇ ଅନାଇ ରହିଛି, ଅରଫିଅସ ସିଂହଦରଜା ଡେଇଁ ରାଜା ପ୍ଳୁଟୋଙ୍କ ସିଂହାସନ ପାଖରେ ହାଜର । ପୃଥିବୀର ଏକ ଜୀଅନ୍ତା ମଣିଷକୁ ଦେଖି ରାଜା ପ୍ଳୁଟୋ ଏବଂ ରାଣୀ ପ୍ରାସ୍ତରିନ ଆଚମ୍ବିତ ହେବା ଆଗରୁ ସେ ତାଙ୍କ ପାଦତଳେ ବସିପଡ଼ି ଅତ୍ୟନ୍ତ କରୁଣ ସ୍ୱରରେ ବୀଣା ବଜାଇଲା ଏବଂ ଗୀତଟିଏ ଗାଇଲା । ସେ ଗୀତର ଭାବ ଏତେ ଦୁଃଖପୂର୍ଣ୍ଣ ଥିଲା ଯେ, ରାଜା ରାଣୀ ଅଧୀର ହୋଇ କାନ୍ଦି ପକାଇଲେ । ସେମାନେ ଦୟାକରି ତାକୁ ବର ଯାଚିଲେ । ଅରଫିଅସ କହିଲା, ମୋତେ ଦୟାକରି ମୋର ସ୍ତ୍ରୀ ଉରିଡାଇସକୁ ଫେରାଇ ଦିଅନ୍ତୁ । ପ୍ଳୁଟୋ କହିଲେ, ''ଗୋଟିଏ ସର୍ତ୍ତରେ ତୋର ମନକାମନା ପୂରଣ ହେବ । ତୁ ଆଗେ ଆଗେ ଯିବୁ ଏବଂ ତୋର ପଛରେ ତୋର ସ୍ତ୍ରୀ ଯାଉଥିବ । ମାତ୍ର ପାତାଳପୁରୀ ପାରି ନ ହେବା ପର୍ଯ୍ୟନ୍ତ ତୁ ପଛକୁ ଚାହିଁବୁ ନାହିଁ । ପଛକୁ ଚାହିଁଦେଲେ ସେ ସେଇଠାରୁ ଫେରିଆସିବ ।''

ଅରଫିଅସ ଅତ୍ୟନ୍ତ ଖୁସୀ ହୋଇ ରାଜି ହେଲା । ସେ ଆଗେ ଆଗେ ଚାଲିଥାଏ । ତାର ପଛେ ପଛେ ଉରିଡାଇସ୍ ଚୁପ୍‌ଚାପ୍ ଯାଉଥାଏ । ପାତାଳର ସୀମା ପାଖରେ କାହିଁକି କେଜାଣି ଅରଫିଅସର ମନରେ ସନ୍ଦେହ ହେଲା । ସେ ପଛକୁ ଚାହିଁଦେଇ ଦେଖିଲା ଯେ, ତାର ସ୍ତ୍ରୀ ସଙ୍ଗେ ସଙ୍ଗେ ପାତାଳପୁରୀ ମଧ୍ୟରେ ବୁଡ଼ିଯାଉଛି ।

ଏତେ ପରିଶ୍ରମ ବୃଥା ହେଲା । ଅନ୍ଧାରିଆ ନଈକୂଳରେ ସାତଦିନ ସାତରାତି ଅରଫିଅସ ଅପେକ୍ଷା କରି ରହିଲା । ଖାଦ୍ୟ କି ପାଣି କିଛି ଛୁଇଁଲା ନାହିଁ ।

ପରିଶେଷରେ ସେ ଗୋଟିଏ ପାହାଡ଼ ଉପରେ ଆଶ୍ରୟ ଗ୍ରହଣ କଲା । ପଶୁପକ୍ଷୀଙ୍କ ସାଙ୍ଗରେ ତାର ସମୟ କୌଣସି ପ୍ରକାରେ ବିତି ଯାଉଥାଏ । ସବୁବେଳେ କେବଳ ତାର ସ୍ତ୍ରୀ କଥା ଭାବୁଥାଏ । ଦିନେ କେତେଜଣ କିନ୍ନରୀ ସେ ପାହାଡ଼କୁ ହସିଖେଳି ବୁଲିବା ପାଇଁ ଆସିଥିଲେ । ସେମାନେ ମନମଉଜରେ ବୁଲୁ ବୁଲୁ ଅରଫିଅସକୁ ଦେଖି ତାକୁ ବୀଣା ବଜାଇବାକୁ ଆଦେଶ ଦେଲେ । ଅରଫିଅସ ଏହି ହସଖୁସିରେ ଯୋଗ ଦେଇପାରିଲା ନାହିଁ । ଗୀତ ଗାଇବାକୁ ମନା କରିଦେଲା । ଏଥିରେ କିନ୍ନରୀମାନେ ରାଗିଯାଇ ତାକୁ ବେଢ଼ିଗଲେ ଏବଂ ମାରି ପକାଇଲେ । ଶେଷରେ ତାର ଶବକୁ ଅନ୍ଧାରିଆ ନଈରେ ଭସାଇଦେଲେ ।

ଅରଫିଅସ ମରିଯିବାରୁ ଗଛଲତା, ବଣପାହାଡ଼, ଝରଣା ସମସ୍ତେ ତାର ମଧୁର ସଙ୍ଗୀତ କଥା ମନେପକାଇ ଝୁରିବାକୁ ଲାଗିଲେ । ମାତ୍ର ଅରଫିଅସ ମୃତ୍ୟୁ ପରେ ଅନ୍ଧାରିଆ ନଈ ପାରି ହୋଇ ପାତାଳପୁରୀରେ ନିଜର ସ୍ତ୍ରୀ ସହିତ ସୁଖରେ ଘର କରି ରହିଲା ।



# ଲକ୍ଷ୍ମୀ କାହାରି ନୁହନ୍ତି



ରାଜସ୍ଥାନରେ ଜୟପୁର ଗୋଟିଏ ବଡ଼ ସହର । ସେଠାରେ ଜଣେ ଧନୀ ସୌଦାଗର ବାସ କରୁଥାଆନ୍ତି । ସହରରେ ତାଙ୍କର ବିରାଟ କୋଠା; ଦାସଦାସୀ, ଯାନବାହନ ଯାହାକୁ ଯେତେ । ପିଲାମାନେ ଅତ୍ୟନ୍ତ ବାଧ୍ୟ ଏବଂ ଯୋଗ୍ୟ । ଏତେ ବଡ଼ ବ୍ୟବସାୟକୁ ସେମାନେ ସମ୍ଭାଳି ଥାଆନ୍ତି । ସଂସାରରେ ସୁଖସମ୍ପତ୍ତି କହିଲେ ଯାହା କୁହାଯାଏ, ଧନୀବଣିକଙ୍କର ସେହି ସବୁ ଭରପୁର ହୋଇ ରହିଥିଲା ।

ଧନସମ୍ପତ୍ତିର ଦେବୀ ହେଉଛନ୍ତି ଲକ୍ଷ୍ମୀ । ତାଙ୍କ ନାମ ଚଞ୍ଚଳା । ସେ ସବୁଦିନ ଗୋଟିଏ ସ୍ଥାନରେ ରହିବାକୁ ଭଲ ପାଆନ୍ତି ନାହିଁ ।

ସୌଦାଗର ତ ଲକ୍ଷ୍ମୀଙ୍କର ଦୟାରୁ ଏତେ ଧନସମ୍ପତ୍ତିର ମାଲିକ ହୋଇଥାନ୍ତି । ଦିନେ ରାତିରେ ଲକ୍ଷ୍ମୀ ତାଙ୍କୁ ସପନରେ କହିଲେ, ''ମୋର ତୋ ପାଖରେ ରହିବା ଦିନ ସରିଆସିଲା । ଏଥର ମୋତେ ଖୁସି ମନରେ ବିଦାୟ ଦେ ।''

ସ୍ୱପ୍ନ ଦେଖି ସୌଦାଗର ଚମକି ପଡ଼ିଲେ । ଲକ୍ଷ୍ମୀ ଛାଡ଼ିଗଲେ ଦାରିଦ୍ର୍ୟ ବରଣ କରିବାକୁ ହେବ । ସେ ବିନୀତ ହୋଇ ପ୍ରାର୍ଥନା କଲେ, ''ମା' ମୋତେ ଆଉ ଛଅଟି ମାସ ସମୟ ଦିଅ । ତୁମେ ଚାଲିଗଲା ପରେ ମୁଁ କେମିତି ଚଳିବି, ସେକଥା ମୁଁ ଆଗରୁ ବ୍ୟବସ୍ଥା କରିବି ।''

ଲକ୍ଷ୍ମୀ ତ ଦୟାମୟୀ । ସେ ସୌଦାଗରଙ୍କ କଥାରେ ରାଜି ହୋଇଗଲେ ।

ସୌଦାଗର ତାଙ୍କର ଧନସମ୍ପତ୍ତି ବଦଳରେ କେତେଗୁଡ଼ିଏ ହୀରାନୀଳା ମଣିମାଣିକ କିଣିଲେ । ସେ ଭାବିଲେ, ସେ ସବୁଗୁଡ଼ିକୁ ଖଣ୍ଡିଏ ରୁମାଲରେ ବାନ୍ଧି ମନଇଚ୍ଛା ବୁଲିପାରିବେ । ସେ ସ୍ଥିର କଲେ ଏଣିକି କୌଣସି ତୀର୍ଥ ସ୍ଥାନରେ ବାକୀ ଜୀବନଟା ବିତାଇଦେବେ ।

ଭାରତର ଏକ ପ୍ରସିଦ୍ଧ ତୀର୍ଥ ହେଉଛି ହରଦ୍ୱାର । ପବିତ୍ର ଗଙ୍ଗାନଦୀର କୂଳରେ ଏହା ଅବସ୍ଥିତ । ସୌଦାଗର ସେଠାରେ ପହଞ୍ଚି ଛୋଟ ଜାଗାଟିଏ କିଣିଲେ ନଦୀ କୂଳରେ । କାଠର ଖୁଣ୍ଟ ବସାଇ ଚାଳି ଘରଟିଏ ତିଆରି କଲେ । କାଠ ଖୁଣ୍ଟରେ ଖୋପ କରି ତା' ଭିତରେ ମଣିମାଣିକ ତକ ସାଇତି ରଖିଲେ । ଲକ୍ଷ୍ମୀ ଛାଡ଼ିଗଲେ ମଧ୍ୟ ମଣିମାଣିକ ତକ ରହିଯିବ ତ ।

ଏଣିକି ସୌଦାଗର ନିଶ୍ଚିନ୍ତରେ ରହିଲେ । ତାଙ୍କର ଆଉ ଅଭାବ କ'ଣ ? ଛଅମାସ ପରେ ଲକ୍ଷ୍ମୀ ତାଙ୍କୁ ପରିତ୍ୟାଗ କଲେ କିଛି ଅସୁବିଧା ହେବନାହିଁ ।

ଚାହୁଁ ଚାହୁଁ ଛଅଟି ମାସ ପୂରିବାକୁ ବସିଲା । ଆଉ ଦିନଟିଏ ବାକୀ ଥାଏ, ରାତିରେ ଲକ୍ଷ୍ମୀ ସୌଦାଗରଙ୍କୁ ସପନରେ କହିଲେ, ‘‘ଏଥର ମୋତେ ବିଦାୟ ଦେବୁ । ଛଅମାସ ପୂରିଗଲେ ମୁଁ ତୋତେ ଛାଡ଼ି ଗଙ୍ଗା ନଦୀର ଆରପାଖରେ ଥିବା ଗୋଟିଏ ଗୁଡ଼ିଆ ଘରେ ଯାଇ ରହିବି ।’’

ରାତି ପାହିଲାବେଳକୁ ପ୍ରବଳ ତୋଫାନ ମାଡ଼ି ଆସିଲା । ଗଙ୍ଗାନଦୀର ପାଣି ଫୁଲିଯାଇ କୂଳ ଡେଇଁ ମାଡ଼ି ଆସୁଥାଏ । ଚାହୁଁ ଚାହୁଁ ସୌଦାଗରଙ୍କ କୁଡ଼ିଆ ଘର ଭାସିଗଲା । କାଠଖୁଣ୍ଟ ସବୁ ନଦୀ ଜଳରେ ଭାସି ଭାସି ଆର କୂଳରେ ଲାଗିଲା ଜଣେ ଗୁଡ଼ିଆର ଦୋକାନ ପାଖରେ । କାଠଖୁଣ୍ଟତକ ସଂଗ୍ରହ କରି ଗୁଡ଼ିଆ ସାଇତି ରଖିଲା ।

ଝଡ଼ ବନ୍ଦ ହୋଇଯିବାରୁ ସୌଦାଗର ନୌକା ଚଢ଼ି ନଦୀ ପାର ହେଲେ । ଗୁଡ଼ିଆ ଯେଉଁଠି ଚାଳି ଘରଟିରେ ଦୋକାନ ଦେଇଥିଲା, ସେଠାରେ ପହଞ୍ଚି ଦେଖିଲେ ତାଙ୍କର କାଠଖୁଣ୍ଟତକ ଥୁଆ ହୋଇଛି । ସେ ଗୁଡ଼ିଆକୁ କହିଲେ, ‘ଭାଇ, ଏହାକୁ ସାମାନ୍ୟ କାଠଖୁଣ୍ଟ ଭାବିବ ନାହିଁ । ଏହା ଖୋପରେ ମଣିମାଣିକ୍ୟ ଥୁଆ ହୋଇଛି ।’ ଏଥର ସେ ନିଜର ଅନୁଭୂତି କହି ବସିଲେ ।

ଗୁଡ଼ିଆ ବଡ଼ ଦୁଃଖିତ ହେଲା ସୌଦାଗର ବିଷୟରେ । ସେ କହିଲା, ‘‘ଭାଇ ! ଏ ଧନ ତୁମର ଥିଲା । ଅଚାନକ ମୋର ହସ୍ତଗତ ହୋଇଛି । ଏଥିରୁ ଅଧେ ହୀରାନୀଳା ତୁମର ।’’

ସୌଦାଗର ସେତେବେଳକୁ ବୁଝି ଯାଇଥିଲେ ଯେ, ଛାଡ଼ିଯାଇଥିବା ଲକ୍ଷ୍ମୀ ଆଉ ଫେରିଆସିବେ ନାହିଁ । ସେ ତେଣୁ ଧନ ପ୍ରତି ଲୋଭ କରିବେ କାହିଁକି ? ସେ କହିଲେ, ‘‘ନା ଭାଇ ! ହଜିଲା ଧନକୁ ମୁଁ ଆଶା କରିବି ନାହିଁ । ଲକ୍ଷ୍ମୀ ତ ମୋତେ ଛାଡ଼ିଗଲେଣି । ଆଉ ଧନ ରଖିବି କିପରି ?’’

ଏ କଥାରେ ଗୁଡ଼ିଆର ବିଶ୍ୱାସ ହେଲାନାହିଁ । ସେ କେତୋଟି ମିଠେଇ ଭିତରେ ଲୁଚାଇକରି ହୀରାନୀଳା ରଖିଦେଲା । ସୌଦାଗର ବିଦାୟ ନେଲା ସମୟରେ କହିଲା, ''ଭାଇ, ଏ ମିଠେଇତକ ରଖିଥାଅ । ବାଟରେ ଭୋକ ହେଲେ ଖାଇବ ।''

ଗୁଡ଼ିଆ ଭାବିଲା, ମିଠେଇ ଖାଇଲାବେଳେ ସୌଦାଗର ତାଙ୍କ ମଣିମାଣିକ୍ୟ ଫେରିପାଇବେ । କିନ୍ତୁ ବିଧିର ବିଧାନ ଥିଲା ଅନ୍ୟ ପ୍ରକାର ।

ଆର କୂଳରେ ନୌକା ରହିଲା । ସୌଦାଗର ଘାଟ ମୂଲ ଦେବେ ବୋଲି ନିଜର ଟଙ୍କା ଥଳି ଖୋଜିବସିଲେ । ଆହା ! ସେଇଟି ମଧ ପାଣିରେ କେଉଁଠି ପଡ଼ିଯାଇଛି । ପାଖରେ ଆଉ କୌଣସି ଧନ ନ ଥିଲା । ଏବେ ସେ ନାଉରୀମାନଙ୍କୁ କ'ଣ ଦେବେ ? ବଡ଼ ବିନୀତ ହୋଇ ସୌଦାଗର କହିଲେ, ''ନାଉରୀଭାଇ, ମୋର ଟଙ୍କା ଥଳିଟି କେଉଁଠି ହଜାଇବସିଲି । ମୋ ପାଖରେ କାଣୀ କଉଡ଼ିଟିଏ ନାହିଁ । ଏଇ ଲଡୁତକ ମୋର ସମ୍ବଳ । ତୁମେ ଘାଟମୂଲ ବଦଳରେ ଏହି ଲଡୁତକ ଗ୍ରହଣ କର ।''

ନାଉରୀମାନଙ୍କର ଆଉ କିଛି ଉପାୟ ନ ଥିଲା । ସେଦିନ ଆଉ ରୋଜଗାର କିଛି ନ ଥିଲା । ଲଡୁରେ କ'ଣ ପେଟ ପୂରିବ ? ସେମାନେ ପୁନର୍ବାର ନଈ ଆରପଟ ଗୁଡ଼ିଆ ଦୋକାନ ପାଖରେ ନାହା ଭିଡ଼ିଲେ । ଗୁଡ଼ିଆକୁ ଲଡୁ ବଦଳରେ କିଛି ରୁଟି ତରକାରି ମାଗିଲେ ।

ଲଡୁତକ ଫେରି ଆସିଥିବାରୁ ଗୁଡ଼ିଆ ଚମକି ପଡ଼ିଲା । ବାସ୍ତବିକ ଥରେ ଲକ୍ଷ୍ମୀ ବିମୁଖ ହେଲେ ମଣିଷର ଏହିପରି ଦଶା ହୁଏ । ତାକୁ କୌଣସି ଧନ ଯୋଗ ହୁଏନାହିଁ । ସେ ଦରିଦ୍ର ହୋଇ ରହିବାକୁ ବାଧ ହୁଏ । ଆମର ଗୋଟିଏ ଢଗ ଅଛି—

''ନଥିଲା ଲୋକର ବୁଦ୍ଧି ହୁଏ ନାଶ
ଯେତେ ଫନ୍ଦା କଲେ ନ ପୂରଇ ଆଶ ।''

ସୌଦାଗର ଲକ୍ଷ୍ମୀଛଡ଼ା ହୋଇଗଲା ପରେ ଧନ ତାଙ୍କଠାରୁ ଦୂରେଇ ରହିଲା । ଯେତେ ଉପାୟ କଲେ ମଧ ସେ ଆଉ ଧନର ଅଧିକାରୀ ହୋଇପାରିଲେ ନାହିଁ । ଗୁଡ଼ିଆ ଚେଷ୍ଟା କରି ସୁଦ୍ଧା ସୌଦାଗରଙ୍କୁ ଧନ ଫେରାଇ ପାରିଲା ନାହିଁ ।

ନାଉରିଆମାନଙ୍କଠାରୁ ଲଡୁ ରଖି ତା' ବଦଳରେ ମନଭରି ରୁଟି ତରକାରୀ ଖାଇବାକୁ ଦେଲା । ସେ ଅନୁଭବ କଲା, 'ବାସ୍ତବିକ ଲକ୍ଷ୍ମୀ ଚଞ୍ଚଳା । ତାକୁ ସବୁଦିନ ପାଇଁ କିଏ ଅବା ବାନ୍ଧି ରଖିପାରିବ !!'



# ଠକକୁ ଠକ ଜିତେ

ଛୋଟ ଗାଁଟିଏ । ସେଠାରେ ଜଣେ ବ୍ରାହ୍ମଣ ବାସ କରୁଥିଲେ । ପରିବାର କହିଲେ ସେ ଏବଂ ତାଙ୍କର ସ୍ତ୍ରୀ । ଜମିବାଡ଼ି ତାଙ୍କର କିଛି ନ ଥିଲା । ପୁରୋହିତ କାମ କରି ଦୁଃଖେ ସୁଖେ ସଂସାର ଚଳାଉଥିଲେ ।

ଦିନକର କଥା । ରାତିରେ ବ୍ରାହ୍ମଣ ସ୍ୱପ୍ନ ଦେଖିଲେ, ତାଙ୍କର ସ୍ୱର୍ଗତ ବାପା ବଳଦ ପିଠିରେ ବସି ତାଙ୍କ ପାଖରେ ହାଜର । ପୁଅକୁ କହିଲେ, ''ତୁ ମୋତେ ଶ୍ରାଦ୍ଧ ଦେଉ ନାହୁଁ କାହିଁକି ?''

ସ୍ୱପ୍ନ ଦେଖିସାରିଲା ବେଳକୁ ବ୍ରାହ୍ମଣଙ୍କର ନିଦ ଭାଙ୍ଗିଗଲା । ସ୍ତ୍ରୀଙ୍କ ଆଗରେ ସ୍ୱପ୍ନ କଥା କହିଲେ । ବ୍ରାହ୍ମଣଙ୍କର ଭାବନା କହିଲେ ନ ସରେ । ସେ ତ ଅଭାବୀ ଲୋକ । ଶ୍ରାଦ୍ଧଟିଏ କଲେ ଅନେକ ବ୍ରାହ୍ମଣ ନିମନ୍ତ୍ରିତ ହୋଇ ଆସି ଭୋଜନ କରିବେ । ନୂଆ ଲୁଗା ପିନ୍ଧିବେ । ଶ୍ରାଦ୍ଧ ପତର ବଢ଼ାହେବ । ଏଥିରେ ଖର୍ଚ୍ଚ ହେବ ଅନେକ ଟଙ୍କା । ସେ କେଉଁଠୁ ଏସବୁ ଯୋଗାଡ଼ କରିପାରିବେ ?

ବ୍ରାହ୍ମଣଙ୍କର ସ୍ତ୍ରୀ ବଡ଼ ଚତୁରୀ । ସେ କହିଲେ, ''ଏଥିପାଇଁ ଭାବନା କ'ଣ ? ଆମର ଜମିବାଡ଼ି କିଛି ନାହିଁ । ଘରେ ବଳଦଟିଏ ପୋଷିବା କାହିଁକି ? ବାପା ସ୍ୱପ୍ନରେ ସେହିକଥା କହିଲେ । ବଳଦଟି ବିକ୍ରିକରି ସେହି ପଇସାରେ ଶ୍ରାଦ୍ଧ ଦେବା ।''

ବ୍ରାହ୍ମଣ ଏଥିରେ ସନ୍ତୋଷ ପ୍ରକାଶ କଲେ । ପଚାରିଲେ, ''କେତେ ଦାମ୍ ପାଇଲେ ବଳଦଟି ବିକ୍ରି କରିବି ।''

ବ୍ରାହ୍ମଣଙ୍କର ସ୍ତ୍ରୀ କହିଲେ, ''ଅତି କମ୍‌ରେ ଶହେଟଙ୍କା ପାଇଲେ ବଳଦକୁ ଦେଇଦେବ ।''

ତହିଁ ଆରଦିନ ବଳଦକୁ ଦଉଡ଼ିରେ ବାନ୍ଧି ବ୍ରାହ୍ମଣ ଚାଲିଲେ ହାଟ ଆଡ଼କୁ । ବାଟରେ ଜଣେ ବାଟୋଇ ସହିତ ଦେଖାହେଲା । କଥାବାର୍ତ୍ତାରୁ ବାଟୋଇ ଜାଣିଲେ ଯେ ବ୍ରାହ୍ମଣ ବଡ଼ ସରଳ ଲୋକ । ତାଙ୍କୁ ସହଜରେ ଠକିଦେଇ ହେବ । ସେ ଥିଲା ବାଟୋଇ ବେଶରେ ଠକଟାଏ । ବ୍ରାହ୍ମଣଙ୍କୁ ପଚାରିଲା, ''କେତେ ମୂଲ୍ୟ ପାଇଲେ ବଳଦକୁ ଦେଇପାରିବ ?''

ବ୍ରାହ୍ମଣ କହିଲେ, ''ମୋ ସ୍ତ୍ରୀ କହିଛନ୍ତି, ଅତି କମ୍‌ରେ ଶହେଟଙ୍କା ନ ହେଲେ ଦେବିନାହିଁ ।''

ଚତୁର ଠକ କହିଲା, ''ଖୁବ୍ ବେଶି ହେଲେ ବଳଦଟି ପଚିଶଟଙ୍କା ହେବ । ତୁମର ଯଦି ବିଶ୍ୱାସ ହେଉନାହିଁ, ତେବେ ଚାଲ, ଏଇ ଗାଆଁ ମୁଣ୍ଡରେ ବସିଥିବା ଜଣେ ବୃଦ୍ଧଲୋକଙ୍କୁ ପଚାରିବା । ସେ ଯାହା ନିଷ୍ପତ୍ତି କରିବେ ଆମେ ଦୁହେଁ ମାନିନେବା ।''

ଏଥିରେ ବ୍ରାହ୍ମଣ ରାଜି ହୋଇଗଲେ । ଦୁହେଁ କଥାବାର୍ତ୍ତା ହୋଇ ଚାଲିଲେ ସେହି ବୃଦ୍ଧଲୋକ ପାଖକୁ । ଦୁହେଁ ବୁଢ଼ାଙ୍କ ପାଖରେ ପହଞ୍ଚି ସବୁ କଥା କହିଲେ । ବୁଢ଼ା କିଛି ସମୟ ଭାବିବାର ଛଳନା କରି କହିଲେ, ''ବଳଦଟି ତିରିଶ ଟଙ୍କା ହେବ ।''

ବ୍ରାହ୍ମଣ ଏଥିରେ ବିଶ୍ୱାସ କଲେ । ଭାବିଲେ, ସ୍ତ୍ରୀଟା ମାଇପି ଲୋକ । ବଳଦ କିଣାବିକା କଥା ତାକୁ କ'ଣ ଜଣା ? ଏ ବୁଢ଼ାଲୋକ ଯାହା କହିଲେ, ତାହା ଠିକ୍ ଅଟେ ।

ତିରିଶ ଟଙ୍କା ଧରି ବ୍ରାହ୍ମଣ ଘରକୁ ଫେରିଆସିଲେ ଏବଂ ସ୍ତ୍ରୀକୁ ସବୁକଥା କହିଲେ । ବ୍ରାହ୍ମଣଙ୍କର ସ୍ତ୍ରୀ କହିଲେ, ''ତୁମେ ଠକ ହାବୁଡ଼େ ପଡ଼ିଗଲ । ସେଇ ବୁଢ଼ାଲୋକଟି ଆଉ କେହି ନୁହେଁ, ସେଇ ଠକର ବାପ । ଦୁହେଁ ତୁମକୁ ଠକି ଦେଲେ ।''

ଏଥିରେ ବ୍ରାହ୍ମଣଙ୍କର ଦୁଃଖର ସୀମା ରହିଲା ନାହିଁ । ମନେ ମନେ ଶପଥ କଲେ, ସେ ଏହାର ପ୍ରତିଶୋଧ ନେବେ ।

ତହିଁ ଆରଦିନ ବ୍ରାହ୍ମଣ ଜଣେ ବୈଦ୍ୟ ବେଶ ଧରି ହାଟକୁ ଚାଲିଲେ । ବାଟରେ ଠକ ସହିତ ସାକ୍ଷାତ ହେଲା । ଛଦ୍ମବେଶରେ ଥିବାରୁ ବ୍ରାହ୍ମଣଙ୍କୁ ସେ ଚିହ୍ନିପାରିଲା ନାହିଁ । ଠକ ଜଣକ କବିରାଜଙ୍କୁ ନମସ୍କାର କଲା । କହିଲା, ''ଆପଣେ ! ଦୟାକରି ମୋ ବୁଢ଼ାବାପାଙ୍କୁ କିଛି ଔଷଧ ଦେଇ ଯାଆନ୍ତୁ । ତାଙ୍କ ଦେହ ଭଲ ନାହିଁ ।''

ଠକ ସହିତ ବ୍ରାହ୍ମଣ ଚାଲିଲେ ଗାଁ ଭିତରକୁ । ଠକର ବାପା ପୂର୍ବ ପରିଚିତ ସେହି ବୁଢ଼ା ବୋଲି ଜାଣିଲେ । ସେ ପ୍ରଥମେ ବୁଢ଼ାର ନାଡ଼ି ପରୀକ୍ଷା କରି ପୁଅକୁ କହିଲେ, ''ତୁମେ ତୁରନ୍ତ କିଛି ଛେଳି ଦୁଧ ନେଇ ଆସ । ମୁଁ ଔଷଧ ତିଆରି କରିଦେବି ।''

ଛେଳିଦୁଧ ଆଣିବା ପାଇଁ ପୁଅଟି ଯେମିତି ଗାଁ ବାହାରକୁ ଯାଇଛି, କବିରାଜ ବେଶରେ ଥିବା ବ୍ରାହ୍ମଣ ନିଜର ବେଶ ଉତାରି ଦେଲେ । ବୁଢ଼ାଟି ପୂର୍ବଦିନର ବ୍ରାହ୍ମଣଙ୍କୁ ଦେଖି ଭୟରେ ଚମକି ପଡ଼ିଲା । ବ୍ରାହ୍ମଣ ଘର କୋଣରୁ ଠେଙ୍ଗାଟିଏ ଆଣି ବୁଢ଼ାକୁ ପିଟିବାକୁ ଲାଗିଲେ । ମାଡ଼ ଖାଇ ବୁଢ଼ା ବେହୋସ ହୋଇ ତଳେ ପଡ଼ିଗଲା । ବ୍ରାହ୍ମଣ ବୁଢ଼ାର ଟ୍ରଙ୍କ ଖୋଲି ସମସ୍ତ ଧନ ଧରି ଘରକୁ ପଳାଇ ଆସିଲେ ।

ବୁଢ଼ାର ପୁଅ ଛେଳିଦୁଧ ଧରି ଘରକୁ ଆସିଲା ବେଳକୁ ଦୁଆର ମେଲା । ବୁଢ଼ା ବେହୋସ ହୋଇ ତଳେ ପଡ଼ିଛି । ଗୋଟିଏ ଟ୍ରଙ୍କ ଭଙ୍ଗା ହୋଇ ଖାଲି ପଡ଼ିଛି । ମୁହଁରେ ପାଣିଛାଟି ବାପକୁ ହେପାଜତ କଲା । କର୍ମ ଆଦରି ରହିଲା ।

ଆଉ ଦିନକର କଥା । ବ୍ରାହ୍ମଣ ଜଣକ ଜ୍ୟୋତିଷର ଛଦ୍ମବେଶରେ ହାଟକୁ ବାହାରିଲେ । ବାଟରେ ଦେଖାହେଲା ପୂର୍ବ ପରିଚିତ ଠକ ସହିତ । ଜ୍ୟୋତିଷକୁ

ଦେଖି ଠକ ଜଣକ ନମସ୍କାର କରି କହିଲା, ''ଗଣକ ମହାଶୟ, ମୋର ହାତ ଦେଖି ଫଳାଫଳ କହନ୍ତୁ ।''

କେତେ ସମୟ ଠକର ହାତ ପରୀକ୍ଷା କରି ବ୍ରାହ୍ମଣ କହିଲେ, ''ତୋର ବର୍ତ୍ତମାନ ଶନି ଦଶା ପଡ଼ିଛି । ବହୁତ କଷ୍ଟ ଯୋଗ ଅଛି । ମଙ୍ଗଳବାରେ ଓ ଶନିବାରେ ହନୁମାନ ମନ୍ଦିରରେ ଯାଇ ଏକବର୍ଷ ପର୍ଯ୍ୟନ୍ତ ପୂଜା କଲେ ଏଥିରୁ ମୁକ୍ତି ପାଇବୁ । ଆଜି ମଙ୍ଗଳବାର । ତୁରନ୍ତ ହନୁମାନ ମନ୍ଦିରକୁ ଯାଇ ଆଜିଠାରୁ ପୂଜା ଆରମ୍ଭ କର ।''

ବ୍ରାହ୍ମଣଙ୍କ କଥା ମାନି ଠକ ଜଣକ ଗାଁ ବାହାରକୁ ଚାଲିଗଲା । ଏହି ଅବସରରେ ବ୍ରାହ୍ମଣ ଯାଇ ପହଞ୍ଚିଲା ଠକ ଘରେ । ଠକର ବୁଢ଼ାବାପ ଘର ଭିତରେ ବସିଥିଲା । ବ୍ରାହ୍ମଣଙ୍କୁ ଦେଖି ଥରିବାକୁ ଲାଗିଲା । ଘର ଭିତରୁ ଠେଙ୍ଗାଟିଏ ଆଣି ବ୍ରାହ୍ମଣ ତାଙ୍କୁ ପୁଣି ମନଇଚ୍ଛା ପିଟିଲେ । ମାଡ଼ ଦେଉଥାଆନ୍ତି ଏବଂ କହୁଥାଆନ୍ତି, ''ଠକିଥିଲୁ ପରା, ଏବେ ଫଳ ଭୋଗ କର ।''

ମାଡ଼ ଖାଇ ବୁଢ଼ାଟି ଚେତା ହରାଇବସିଲା । ବ୍ରାହ୍ମଣ ଘର ଭିତରେ ଆଉ ଗୋଟିଏ ଟ୍ରଙ୍କ ଭାଙ୍ଗି ଧନ ରତ୍ନ ଧରି ଘରମୁହାଁ ଚାଲିଲେ । ଠକ ଘରକୁ ଫେରି ଦେଖିଲା, ବାପା ବେହୋସ ହୋଇ ପଡ଼ିଛି । ଧନ ବୋଲି ଯାହା ସାଇତା ହୋଇଥିଲା, ସବୁ ଶେଷ ହୋଇଗଲା ।

ଆଜି ପର୍ଯ୍ୟନ୍ତ ସେ ଅନ୍ୟମାନଙ୍କୁ ଠକି କରି ଚଳୁଥିଲା । ଚୋର ଘର ସବୁବେଳେ ଅନ୍ଧାର ନ ଥାଏ । ଦିନେ ନା ଦିନେ ସେ ତାର କର୍ମଫଳ ଭୋଗ କରେ ।

ସେହିଦିନୁ ଠକ ଜଣକ ମନେ ମନେ ନିଷ୍ପତ୍ତି କଲା, ''ଆଉ କାହାକୁ ଠକିବ ନାହିଁ । ଏଣିକି ପରିଶ୍ରମ କରି ଚଳିବ ।''

ବ୍ରାହ୍ମଣ ଯେତିକି ଠକି ହୋଇଥିଲେ, ତାର ଚାରିଗୁଣ ଧନ ଠକଘରୁ ଆଦାୟ କଲେ । ମହାଆଡ଼ମ୍ବରରେ ବାପାଙ୍କର ଶ୍ରାଦ୍ଧ ପାଳନ କରାଗଲା । ବ୍ରାହ୍ମଣମାନେ ଭଲ ବିଦାକି ପାଇ କଲ୍ୟାଣ କରି ଚାଲିଗଲେ । ଶ୍ରାଦ୍ଧ ଦେଲେ ପିତୃପୁରୁଷ ଆଶୀର୍ବାଦ କରିଥାଆନ୍ତି ।

# ମ୍ୟାଜିକ୍ ମାଳାର କରାମତି

ନଈ କୂଳରେ ଛୋଟ ଗାଁଟିଏ । ସେଇ ଗାଆଁରେ ବୁଢ଼ାବୁଢ଼ୀ ଦୁଇଜଣ ରହୁଥାଆନ୍ତି । ଚାଷୀ ପରିବାର । ସୁଖେ ଦୁଃଖେ ସଂସାର ଚାଲିଥାଏ । ବୁଢ଼ାବୁଢ଼ୀଙ୍କର ତିନୋଟି ପୁଅ । ପ୍ରଥମ ଦୁଇପୁଅ ବେଶ ଚତୁର । କାମ ଧନ୍ଦାରେ ନିପୁଣ । ଘରକାମ, ବାହାରକାମ କେଉଁଥିରେ ଖୁଣିବାକୁ ନାହିଁ । ସକାଳୁ ସଞ୍ଜଯାଏ ଖଟୁଥାଆନ୍ତି । ଏଥିପାଇଁ କେବଳ ଘରେ ବାପା ମାଆ ନୁହନ୍ତି, ଗାଁର ଲୋକମାନେ ମଧ ପ୍ରଶଂସା କରନ୍ତି । ବୁଢ଼ାବାପା ବଡ଼ ଦୁଇ ପୁଅଙ୍କ ପାଇଁ ଭଲ ପୋଷାକ କିଣି ଆଣିଦିଏ । ସେମାନଙ୍କର ହାତଖର୍ଚ୍ଚ ପାଇଁ ସୁଦ୍ଧା ମଝେ ମଝେ ପଇସା ଯୋଗାଇଥାଏ । ମା' ମଧ ବଡ଼ ଦୁଇ ପୁଅଙ୍କର ସବୁବେଳେ ହାନିଲାଭ ବୁଝୁଥାଏ । ଭଲ ଭଲ ଖାଇବା ଜିନିଷ ତିଆରି କରିଦିଏ । ବାପା ହାଟକୁ ଗଲେ ବଡ଼ ଦୁଇ ପୁଅଙ୍କ ପାଇଁ କେତେ ଜିନିଷ କିଣି ଆଣେ; କିନ୍ତୁ ଏହି ସବୁଥିରେ ସାନପୁଅର ଭାଗ ନଥାଏ । ସେ ଥାଏ ଏକପ୍ରକାର ଅବହେଳିତ । କାରଣ ସାନପୁଅଟା ବୋକା । ତା' ଉପରେ ବାପାବୋଉ ସବୁବେଳେ ଅସନ୍ତୁଷ୍ଟ । ତାର ଖାଇବା ପିନ୍ଧିବା କଥା ଭଲକରି ବୁଝନ୍ତି ନାହିଁ । ସେ ତ ବୋକା, ଦେଲେ ଖାଇବ, ନଚେତ୍ ଉପାସରେ ବସିଥିବ । ଭଲ ଲୁଗା ଖଣ୍ଡିଏ ଦେଲେ ପିନ୍ଧିବ, ନ ହେଲେ ଚିରା ପୋଷାକରେ ଦୁନିଆ ବୁଲୁଥିବ ।

ସେଇ ରାଇଜର ରାଜାଙ୍କର ଗୋଟିଏ ବୋଲି ଝିଅ । ଦେଖିବାକୁ ଚନ୍ଦ୍ରଉଦିଆ ପରି । ଗୋଟିଏ ଚାଉଳରେ ଗଢ଼ା । ତାର ବାହାଘର ବୟସ ହେଲା । କେତେ ରାଇଜର ରାଜକୁମାର ତାଙ୍କୁ ବାହା ହେବାପାଇଁ ଅପେକ୍ଷା କରିଥାଆନ୍ତି । ରାଜକୁମାରୀଙ୍କର ବାହାଘର ପାଇଁ ଦିନ ଠିକ୍ ହୋଇଗଲା । କେତେ ଆଡ଼ମ୍ବର ସହକାରେ ଭୋଜି ହେବ । ରାଇଜଯାକର ପ୍ରଜାପାଟକ ଭୋଜି ପାଇଁ ନିମନ୍ତ୍ରଣ ପାଇଛନ୍ତି । ରାଜକୁମାରୀଙ୍କର ଇଚ୍ଛା, ଯେଉଁ ପୁଅ ପକ୍ଷୀରାଜ ଘୋଡ଼ାରେ ବସି ରାଜାଙ୍କ କଅରରେ ଓହ୍ଲାଇବ, ସେହି ପୁଅକୁ ରାଜକୁମାରୀ ବିବାହ କରିବେ । ଚାରିଆଡ଼େ ଡେଙ୍ଗୁରା ଦିଆହେଲା । ଭୋଜି ଖାଇବା ପାଇଁ ପ୍ରଜାମାନେ ଚାଲିଲେ ରାଜଧାନୀ ଆଡ଼କୁ ।

ଏଣେ ଚାଷୀ ବୁଢ଼ାର ଦୁଇପୁଅ ସଜ ହେଲେ ଭୋଜି ଖାଇଯିବେ ବୋଲି । ଦୁଇଟି ଘୋଡ଼ା ସଜ ହେଲା । ବାଟରେ ଖାଇବା ପାଇଁ ବାପା ବୋଉ କେତେ ସରଞ୍ଜାମ ଯୋଗାଇଦେଲେ ।

ଦୁଇ ଭାଇ ମନଖୁସିରେ ଘୋଡ଼ା ଛୁଟାଇଥାଆନ୍ତି । ଜଙ୍ଗଲ ମଝିରେ ଜଣେ ବୃଦ୍ଧଲୋକ ଭେଟ ହେଲା । ବଡ଼ ଦୁର୍ବଳ ଜଣାଯାଉଥିଲା । ସତେଯେପରି କେତେଦିନ ହେଲା ଖାଇନାହିଁ । ସେ ଦୁଇଭାଇଙ୍କୁ ଅଟକାଇ କିଛି ଖାଇବାକୁ ମାଗିଲା । ସେମାନେ

ବୁଢ଼ାକଥାରେ ବିରକ୍ତ ହେଲେ । କହିଲେ, ''ଆମକୁ ବେଳ ନାହିଁ ତୋତେ ଖାଇବାକୁ ଦେବାପାଇଁ । ଆମେ ଯାଉଛୁ ରାଜାଘର ଭୋଜି ଖାଇବା ପାଇଁ ।'' ଏତିକି କହି ସେମାନେ ବାହାରିଗଲେ ।

ଏଣେ ବଡ଼ ଦୁଇଭାଇ ରଜାଘର ଯିବାରୁ ସାନଭାଇର ମନ ଉଚ୍ଚାଟ ହେଲା । ସେ ଯାଇ ମାଆ ପାଖରେ କହିଲା, 'ମାଆ ମୁଁ ରଜାଘର ଭୋଜି ଖାଇଯିବି ।' ଏକଥା ଶୁଣି ମା' ତା ଉପରେ ବିରକ୍ତ ହେଲା । ''ତୋ ପରି ବୋକା ଲୋକକୁ ରଜାଘର ଅନେଇ ବସିଛନ୍ତି । ତୋର ଅପରିଷ୍କାର ପୋଷାକ, ବେଢ଼ଙ୍ଗ କଥାବାର୍ତ୍ତାକୁ କିଏ ଭଲ ପାଇବ ?''

ଅଧିକ ଜିଗର କରିବାରୁ ମା' ତା ପାଇଁ କିଛି ଶୁଖିଲା ରୁଟି ବାନ୍ଧିଦେଲା । ଘୋଡ଼ା ଦେବାର ପ୍ରଶ୍ନ ଉଠୁନାହିଁ । କହିଲା, ''ଯଦି ମନ କରିଛୁ, ଚାଲିକରି ଯାଅ ।''

ଛୋଟ ଗଣ୍ଠିଲିଟିଏ କାନ୍ଧରେ ପକାଇ ସାନଭାଇ ଜଙ୍ଗଲ ବାଟରେ ରାଜଧାନୀ ଆଡ଼କୁ ଚାଲିଥାଏ । ଜଙ୍ଗଲ ମଝିରେ ସେଇ ବୁଢ଼ାଲୋକ ସହିତ ସାକ୍ଷାତ ହେଲା । ବଡ଼ ଦୁର୍ବଳ ଦେଖାଯାଉଥାଏ । ମୁଣ୍ଡବାଳ ଫୁରୁଫୁରୁ ଉଡୁଥାଏ । ଦେହର କଙ୍କାଳ ଗଣି ହୋଇଯାଉଥାଏ । ବୁଢ଼ାଲୋକଟି ସାନଭାଇକୁ ଅଟକାଇ କହିଲା, ''ପୁଅରେ, ଅନେକ ଦିନ ହେଲା କିଛି ଖାଇନାହିଁ । ମୋତେ କ'ଣ ଖାଇବାକୁ ଦେ ।''

ସାନଭାଇର ମନରେ ଦୟା ହେଲା । ତାକୁ ମା' ଭଲ ପାଏନାହିଁ । ଶୁଖିଲା ରୁଟି ଓ ବାସି ତରକାରୀ ଟିକିଏ ଦେଇଛି । ମନେ ମନେ ଭାବିଲା, ଏହି ବୁଢ଼ାମଣିଷକୁ ତାହା କିପରି ଯାଚିବି ? ଅତ୍ୟନ୍ତ ସଙ୍କୋଚରେ କହିଲା, ''ମଉସା, ମୋ ପାଖରେ ସାମାନ୍ୟ ଶୁଖିଲା ରୁଟି ଦୁଇଖଣ୍ଡ ଏବଂ ବାସି ତରକାରୀ ଅଛି । ତମେ କ'ଣ ତାକୁ ଖାଇପାରିବ ?''

ବୁଢ଼ା କହିଲା, ''ପୁଅ ତୋ ଗଣ୍ଠିଲି ଖୋଲ । ମୋର ଆପତ୍ତି ନାହିଁ ।''

ସାନଭାଇ ଗଣ୍ଠିଲି ଖୋଲି ମା' ଦେଇଥିବା ଶୁଖିଲା ରୁଟି ଓ ବାସି ତରକାରୀ ବାହାର କଲା । ପତ୍ର ଖଣ୍ଡିଏ ପକାଇ ବୁଢ଼ା ପାଇଁ ବାଢ଼ିଦେଲା ।

ବୁଢ଼ା କହିଲା, ''ପୁଅ ! ତୁ ଖାଇବୁ ନାହିଁ ?'' ସାନପୁଅ କହିଲା, ''ମଉସା ! ତୁମେ ବୁଢ଼ାମଣିଷ । ଭୋକରେ ଆଉଟୁ ପାଉଟୁ ହେଉଛ । ତୁମେ ଖାଇ ଦିଅ । ମୁଁ ତ ଘରେ ଖାଇକରି ଆସିଛି । ମୁଁ ନ ଖାଇଲେ ଚଳିଯିବ ।''

ସାନପୁଅର ହୃଦୟରେ ଦୟାଭାବ ଦେଖି ବୁଢ଼ା ଖୁବ୍ ଆନନ୍ଦିତ ହେଲା । ସେ ରୁଟି ଖାଇଲାବେଳେ ପଚାରିଲା, ''ବାପା, ତୁ କୁଆଡ଼େ ବାହାରିଛୁ ?''

ସେ କହିଲା, ''ମଉସା ! ରାଜାଘର ଝିଅ ବାହାଘର । ଯେଉଁ ଲୋକ ପକ୍ଷୀରାଜ ଘୋଡ଼ାରେ ବସିକରି ଯିବ, ସେ ରାଜା ଝିଅକୁ ବାହାହେବ । କେତେ ଭୋଜି ହେବ । ମୁଁ ସେହି ଆଶାରେ ଯାଉଛି ।''

ବୁଢ଼ା କହିଲା, ''ପୁଅରେ, ତୋର ଏହି ମଇଳା ଚିରା ଲୁଗା ଦେଖିଲେ ରାଜାଘର ଲୋକେ ମାରି ଗୋଡ଼ାଇବେ । ତୁ ଆଉ ଭୋଜି ଖାଇବୁ କ'ଣ ?''

ସାନପୁଅ କହିଲା, ''ମୁଁ ଆଉ କ'ଣ କରିବି ? ମୋତେ ବାପାବୋଉ କିଛି ଦିଅନ୍ତି ନାହିଁ । ବଡ଼ ଦୁଇଭାଇ ଭଲ ପୋଷାକ ପିନ୍ଧି ଯାଇଛନ୍ତି । ମୋ ଭାଗ୍ୟରେ ଯାହାଥିବ ।''

ସ୍ୱର୍ଗର ଗନ୍ଧର୍ବ ଜଣେ ଅଭିଶାପ ପାଇ ବଣରେ ବୁଢ଼ା ବେଶରେ ବୁଲୁଥିଲେ । ଏକଥା ସାନପୁଅ ଅବା କିପରି ଜାଣିବ ? ଗନ୍ଧର୍ବ କହିଲେ, ''ବାପା, ତୁ ବ୍ୟସ୍ତ ହୁଅନାହିଁ । ତୋ ହୃଦୟରେ ଦୟାଭାବ ଅଛି । ତୁ ଅନ୍ୟର ଦୁଃଖ ବୁଝିପାରୁଛୁ । ତୋ ପରି ପୁଅ ରାଜାଙ୍କ ଝିଅକୁ ବାହାହେବା ଉଚିତ ।''

ଏତିକି କହି ସେ ତାହାର ହାତକୁ ଗୋଟିଏ ମାଳା ବଢ଼ାଇଦେଲେ । କହିଲେ, ''ଏହି ମାଳାକୁ ତୁ ଠାକୁରଙ୍କ ନାମରେ ତିନିଥର ଜପି ଯାହା ମାଗିବୁ ସେ ତୋତେ ଦେବେ । ମନେରଖ, କାହାର କିଛି କ୍ଷତି କରିବୁ ନାହିଁ ।''

ଏତିକି କହି ବୁଢ଼ା ଉଭାନ ହୋଇଗଲା ।

ସାନପୁଅ ହାତରେ ମାଳି । ପାଖରେ କେହି ନାହିଁ । ସେ ନିଜର ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ସତରେ ଏହା କ'ଣ ଏକ ମ୍ୟାଜିକ୍ ମାଳି ? ସେ ମାଳାକୁ ତିନିଥର ଜପ କରି କହିଲା, ''ମୋତେ ଭଲ ପୋଷାକ ଦିଅ, ଭଲ ଖାଇବାକୁ ଦିଅ ।''

ସତକୁ ସତ ପାଖରେ କେତେ ପ୍ରକାର ସୁମିଷ୍ଟ ଖାଦ୍ୟ ଥୁଆ ହୋଇଗଲା । ସେ ଜୀବନରେ ଏପରି ଜିନିଷ କେବେହେଲେ ଦେଖିନାହିଁ । ଚମତ୍କାର ଜରିଦିଆ ପୋଷାକ ଓ ମୁକୁଟ ମଧ୍ୟ କିଏ ରଖି ଦେଇଗଲା । ସାନପୁଅ ଏଥର ବିଶ୍ୱାସ କଲା । ସେ ପେଟପୂରାଇ ଖାଇଲା ଏବଂ ତା'ପରେ ଜରିଲଗା ପୋଷାକ ପିନ୍ଧି ପକାଇଲା । ମନରେ ଭାବିଲା, ଯଦି ମନପବନ ଘୋଡ଼ାଟିଏ ମିଳିବ, ତାହାହେଲେ ରାଜାଝିଅକୁ ବାହା ହେବାର ଆଉ ଅସୁବିଧା କ'ଣ ?

ଏହା ଚିନ୍ତାକରି ମାଳାକୁ ତିନିଥର ଜପିସାରି ମନପବନ ଘୋଡ଼ାଟିଏ ମାଗିଲା । ଚାହୁଁ ଚାହୁଁ ପାଖରେ ଗୋଟିଏ କାଠର ଘୋଡ଼ା ଠିଆ ହୋଇଗଲା । ସେ ତା' ଉପରେ ଚଢ଼ି ଆଦେଶ ଦେଲା, ''ଚଲ୍ ମୋର ଘୋଡ଼ା, ରଜା ନଅରକୁ ।''

ସତକୁ ସତ, ଘୋଡ଼ାଟି ଆକାଶରେ ଉଡ଼ି ଉଡ଼ି ରାଜାଙ୍କର ଦରବାର ଆଗରେ ଓହ୍ଲାଇ ପଡ଼ିଲା । ରାଜା ଝିଅକୁ ବାହାହେବା ପାଇଁ କେତେ ରାଇଜର ରାଜାପୁଅ ଆସି ଥାଆନ୍ତି । ହେଲେ ମନପବନ ଘୋଡ଼ା କାହାରି ନ ଥାଏ । ରାଇଜଯାକର ପ୍ରଜା ବାହାଘର ଉତ୍ସବ ଓ ଭୋଜି ପାଇଁ ଏକାଠି ହୋଇଥାଆନ୍ତି ।

ସାନପୁଅ ଘୋଡ଼ାରୁ ଓହ୍ଲାଇ ପଡ଼ି ରାଜାଙ୍କୁ ପ୍ରଣାମ କଲା । କହିଲା, ''ମହାରାଜ, ରାଜକୁମାରୀଙ୍କ ସର୍ତ୍ତ ମୁଁ ପୂରଣ କରିଛି । ତେଣୁ ମୋତେ ତାଙ୍କ ସହିତ ବିବାହ ଦିଆଯାଉ ।''

ମନ୍ତ୍ରୀ ପାଖକୁ ଆସି ତାର ପରିଚୟ ପଚାରିଲେ । ଜାଣିଲେ, ସେ ଜଣେ ସାଧାରଣ ଗରିବ କୃଷକର ପୁଅ । କୌଣସି ବିଦ୍ୟା ବୁଦ୍ଧି ନାହିଁ । ମନେ ମନେ ତାଚ୍ଛଲ୍ୟ କଲେ ।

ମନ୍ତ୍ରୀ କହିଲେ, ''ଠିକ୍ କଥା, ରାଜକୁମାରୀଙ୍କ ସର୍ତ୍ତ ଥିଲା ମନପବନ ଘୋଡ଼ା; କିନ୍ତୁ ଯେଉଁ ପୁରୁଷ ରାଜକୁମାରୀଙ୍କୁ ବିବାହ କରିବ, ସେ ଉତ୍ତମ ଯୋଦ୍ଧା ହେବା ଆବଶ୍ୟକ । କାରଣ ଭବିଷ୍ୟତରେ ସେ ଏ ରାଜ୍ୟର ଉତ୍ତରାଧିକାରୀ ହୋଇ ଶତ୍ରୁମାନଙ୍କୁ ଜବତ୍ କରିବ । ତୁମେ ଯଦି ଆମ ରାଜ୍ୟର ମଲ୍ଲବୀର ସହିତ ଯୁଦ୍ଧ କରି ଜିଣିବ, ତାହାହେଲେ ତୁମ କଥା ବିଚାର କରିବା ।''

ସାନପୁଅ ରାଜି ହୋଇଗଲା । ସେ ଲୁଚାଇ ରଖିଥିବା ମାଳାକୁ ଜପି କହିଲା, ''ମୋତେ ସିଂହର ବଳ ଦିଅ । ମୁଁ ମଲ୍ଲବୀରକୁ ପରାସ୍ତ କରିବି ।''

ଚାହୁଁ ଚାହୁଁ ତା' ଦେହରେ ଅସୁର ପରି ବଳ ମାଡ଼ିଆସିଲା । ରାଜ୍ୟଯାକର ଲୋକେ ଦେଖୁଥାଆନ୍ତି । ସାନପୁଅ ରାଜାଙ୍କର ମଲ୍ଲବୀରକୁ ଅକ୍ଳେଶରେ ଟେକିଧରି ଭୂଇଁ ଉପରେ କଚାଡ଼ି ଦେଲା । ସମସ୍ତେ ବାହାବା' କରୁଥାଆନ୍ତି । ବଡ଼ ଦୁଇଭାଇ ସେହି ଲୋକ ଗହଳି ଭିତରେ ଥାଆନ୍ତି । ମୂଲ୍ୟବାନ ପୋଷାକ ପିନ୍ଧିଥିବା ନିଜର ସାନଭାଇକୁ ଚିହ୍ନିବେ ଅବା କିପରି ? ତାହାଛଡ଼ା ସେମାନେ ଅବା କିପରି ବିଶ୍ୱାସ କରନ୍ତେ ଯେ, ତାଙ୍କର ବୋକା ଭାଇ ଆସି ରାଜଦରବାରରେ ମଲ୍ଲଯୁଦ୍ଧରେ ଜିଣିପାରିବ !!

ମନ୍ତ୍ରୀ ପୁନର୍ବାର ଆଉ ଏକ ପରୀକ୍ଷା ଲୋଡ଼ିଲେ । ସେ କହିଲେ, ''ଆମର ପଡ଼ୋଶୀ ରାଜ୍ୟର ରାଜା ଆମ ରାଜ୍ୟକୁ ଆକ୍ରମଣ କରିବ ବୋଲି ଗୁପ୍ତଚର ଖବର ଦେଇଛି । ତୁମେ ସେ ରାଜାଙ୍କୁ ପରାସ୍ତ କରି ବନ୍ଦୀ ନ କଲା ପର୍ଯ୍ୟନ୍ତ ଏହି ବାହାଘର ହୋଇପାରିବ ନାହିଁ ।''

ସାନଭାଇ କହିଲା, ଏଇ କଥା ତ ! ଆପଣମାନେ ଅପେକ୍ଷା କରନ୍ତୁ; ମୁଁ ବର୍ତ୍ତମାନ ଯାଇ ପଡ଼ୋଶୀ ରାଜାଙ୍କୁ ବନ୍ଦୀ କରି ଦରବାରରେ ହାଜର କରିଦେବି ।''

ସେ ସଙ୍ଗେ ସଙ୍ଗେ ମନପବନ ଘୋଡ଼ାରେ ଚଢ଼ି ପଡ଼ୋଶୀ ରାଜ୍ୟରେ ପହଞ୍ଚିଲା । ମାଳାକୁ ଜପ କରି ମାଗିଲା, ''ମୋତେ ଏକ ସୈନ୍ୟବାହିନୀ ଦିଅ । ସେମାନେ ପଡ଼ୋଶୀ ରାଜ୍ୟକୁ ଜୟକରି ରାଜାଙ୍କୁ ବନ୍ଦୀକରି ଆଣିବେ ।''

ଆଖି ପିଛୁଳାକେ ହଜାର ହଜାର ସୈନ୍ୟ ବାହାରିପଡ଼ିଲେ । ଘମାଘୋଟ ଲଢ଼େଇ ଚାଲିଲା । ସେହି ରାଜ୍ୟର ସୈନ୍ୟ ଓ ସେନାପତି ପରାସ୍ତ ହୋଇ ପଳାୟନ କଲେ । ରାଜାଙ୍କୁ ବନ୍ଦୀ କରି ଅଣାଗଲା । ତାଙ୍କୁ ସାଙ୍ଗରେ ଧରି ସାନଭାଇ ଚାଲିଲା ନଅର ଆଡ଼େ । ନିଜ ରାଜାଙ୍କ ଆଗରେ ପଡ଼ୋଶୀ ରାଜାଙ୍କୁ ବନ୍ଦୀ ଅବସ୍ଥାରେ ଠିଆ କରିଦେଲା ।

ମନ୍ତ୍ରୀ ଏଥର ବୁଝିଲେ ଯେ, ଦରିଦ୍ର ଚାଷୀର ପୁଅ ହେଲେ ହେଁ ସାନଭାଇ ସବୁ ଗୁଣରେ ପରିପୂର୍ଣ୍ଣ, ରାଜକୁମାରୀଙ୍କର ଉପଯୁକ୍ତ । ମହାସମାରୋହରେ ବାହାଘର ହେଲା । ଭୋଜିଭାତ ଖାଇ ସମସ୍ତେ ଘରକୁ ଫେରିଗଲେ । ବଡ଼ ଦୁଇଭାଇ ଘରେ ପହଞ୍ଚି ଜାଣିଲେ ଯେ, ସାନଭାଇ ରାଜାଘରକୁ ଯାଇଛି । ତା'ପରେ ସେମାନେ ଜାଣିବାକୁ ପାଇଲେ ଯେ, ମନପବନ ଘୋଡ଼ାରେ ଯେଉଁ ଯୁବକ ଓହ୍ଲାଇଲା, ସେ ହେଉଛି ତାଙ୍କର ସାନଭାଇ ।

ରାଜା ବୁଢ଼ା ହୋଇଯିବାରୁ ନିଜର ଜାମାତାକୁ ରାଜା କରିଦେଲେ । ମ୍ୟାଜିକ୍ ମାଳା ସାହାଯ୍ୟରେ ସାନଭାଇ ରାଇଜକୁ ସୁଖରେ ପାଳନ କଲା ।

ଓଃଓଃ

# ମେଜିକ୍ ଥଳିର କରାମତି





ପ୍ରାଚୀନ କାଳର କଥା । ଗଙ୍ଗାକୂଳରେ ଦର୍ପନାରାୟଣ ନାମରେ ଜଣେ ରାଜାଙ୍କର ରାଜଧାନୀ ଥିଲା । ରାଜା ଥିଲେ ଅତ୍ୟନ୍ତ ଧର୍ମପରାୟଣ । ପ୍ରଜାମାନଙ୍କର ସୁଖଦୁଃଖରେ ସାଥୀ ହେଉଥିଲେ । ତାଙ୍କ ପ୍ରତାପରେ ସମସ୍ତେ ଥରହର । ପ୍ରଜାମାନଙ୍କୁ ପୀଡ଼ା ଦେବା ପାଇଁ କେହି ରାଜକର୍ମଚାରୀ ସାହସ କରୁ ନ ଥିଲେ । ତେବେ ବେଳେ ବେଳେ ରାଜା ଦର୍ପନାରାୟଣ ଛଦ୍ମବେଶରେ ଏକା ଏକା ରାଜ୍ୟରେ ବୁଲି ବାହାରୁଥିଲେ । ଉଦ୍ଦେଶ୍ୟ ହେଲା, ପ୍ରଜାମାନେ କିପରି ଚଳୁଛନ୍ତି, କଳନା କରିବା ।

ଦିନକର କଥା । ରାଜା ଛଦ୍ମବେଶରେ ରାଜ୍ୟର ଏକ ଜଙ୍ଗଲ ବାଟ ଦେଇ ଯାଉଛନ୍ତି, ଏତିକିବେଳେ ହଠାତ୍ ଦୁଇଜଣ ଡକାୟତ ନିର୍ଜନ ସ୍ଥାନ ଜାଣି ତାଙ୍କୁ ଆକ୍ରମଣ କଲେ । ରାଜାଙ୍କର ଉପାୟ କ'ଣ ? ସେ ତ ଛଦ୍ମବେଶରେ ଅଛନ୍ତି । ହାତରେ କିଛି ଅସ୍ତ୍ର ନାହିଁ କି ସାଙ୍ଗରେ କେହି ଦେହରକ୍ଷୀ ମଧ୍ୟ ନାହାନ୍ତି । ଏହି ସମୟରେ ବିକ୍ରମ ନାମରେ ଜଣେ ସୈନିକ ସେହି ବାଟ ଦେଇ ଯାଉଥିଲା । ସେ ବଡ଼ ସାହସୀ । କେହି ଜଣେ ପଥିକ ବିପଦରେ ପଡ଼ିଛି ଜାଣିପାରି ସେ ନିଜ ଜୀବନକୁ ପାଣି ଛଡ଼ାଇ ଡକାୟତ ଦୁଇଜଣଙ୍କ ଉପରେ କୁଦି ପଡ଼ିଲା । ଏପରି ଅଚାନକ ଆକ୍ରମଣ ପାଇଁ ଡକାୟତ ଦୁଇଜଣ ପ୍ରସ୍ତୁତ ନ ଥିଲେ । ସେମାନେ ପଥିକକୁ ଛାଡ଼ିଦେଇ ବଣ ଭିତରକୁ ପଳାଇଗଲେ ।

ବିକ୍ରମ ମଧ୍ୟ ପଥିକକୁ ନିରାପଦ ଜାଣି ତା' ବାଟରେ ଚାଲିଗଲା । ସେ ପଥିକଠାରୁ ଧନ୍ୟବାଦ ପାଇବାକୁ ମଧ୍ୟ ଅପେକ୍ଷା କଲାନାହିଁ । ସେ ଜାଣେ ନାହିଁ ଯେ, ସେହି ଛଦ୍ମବେଶୀ ପଥିକ ସେହି ରାଜ୍ୟର ରାଜା । ମାତ୍ର ସୈନିକ ପୋଷାକର ଚିହ୍ନ ଦେଖି ରାଜା ବିକ୍ରମକୁ ଚିହ୍ନିପାରିଲେ ।

ତା' ପରଦିନ ଦରବାର ବସିଥାଏ । ରାଜାଙ୍କର ସିପାହୀ ବିକ୍ରମକୁ ତଲବ କରି ଦରବାର କକ୍ଷରେ ହାଜର କଲେ । ସମସ୍ତ ପାରିଷଦଗଣ ଏକାଠି ହୋଇଥାଆନ୍ତି ।

ରାଜା ବିକ୍ରମର ସାହସିକ କାର୍ଯ୍ୟ ପାଇଁ ବହୁତ ପ୍ରଶଂସା କଲେ । ସେ ଘୋଷଣା କଲେ—"ବିକ୍ରମ ତାଙ୍କର ଜୀବନ ରକ୍ଷା କରିଅଛି । ତେଣୁ ସେ ତାକୁ ଆଜୀବନ ସୁଖରେ ରହିବାର ବ୍ୟବସ୍ଥା କରିବେ । ତାର ଆଉ ଚାକିରୀ କରିବା ଦରକାର ନାହିଁ ।"

ରାଜାଙ୍କଠାରୁ ଏପରି ଅନୁଗ୍ରହ ଲାଭ କରିବା ପରମ ଭାଗ୍ୟର କଥା । ବିକ୍ରମର ଆନନ୍ଦ ଦେଖେ କିଏ ? ଏହି ଖବର ଦେବାପାଇଁ ସେ ତାର ଗାଁକୁ ଯାଉଥାଏ । ସୈନିକ ପୋଷାକର ବୋଝ ଆଉ ତାର ଦରକାର ନାହିଁ । ଏଣିକି ସ୍ୱାଧୀନ ଭାବରେ ବୁଲିବ ଏବଂ କାର୍ଯ୍ୟ କରିବ । ଖାଇବା ପାଇଁ ରୋଜଗାରର ଚିନ୍ତା ତ ଆଉ ନାହିଁ ।

ଗାଁକୁ ଯିବା ବାଟରେ ଗୋଟିଏ ହୋଟେଲରେ ବିକ୍ରମ ପଶିଲା । ଗୋଟିଏ ଟେବୁଲ ଅଧିକାର କରି କିଛି ଖାଦ୍ୟ ପାଇଁ ବରାଦ କଲା । ପୂର୍ବରୁ ସେହି ଟେବୁଲ ପାଖରେ ଜଣେ ଭଦ୍ରଲୋକ ବସିଥିଲେ । ବିକ୍ରମକୁ ଦେଖି ସେ ଅତ୍ୟନ୍ତ ସୁଖ ଅନୁଭବ କଲେ । କେତେ ସମୟ ଉଭୟଙ୍କ ମଧ୍ୟରେ ଆଳାପ ବେଶ୍ ଜମିଲା । ଭଦ୍ରଲୋକ ବିଦାୟ ନେବା ପୂର୍ବରୁ ବିକ୍ରମକୁ କହିଲେ, "ତୁମକୁ ମୁଁ ଗୋଟିଏ ବଡ଼ ଥଳି ଦେବି । ତୁମେ ଗ୍ରହଣ କରି ମୋତେ ସୁଖୀ କରାଇବ ।"

ବିକ୍ରମ କହିଲା, "ଆଜି ମୁଁ ସ୍ୱାଧୀନ । ମୁଁ ତ ସୈନିକର ପୋଷାକ ଫେରାଇ ଦେଇ ଆସିଛି । ପୁନଶ୍ଚ ଆଉ ଦାୟିତ୍ୱ କାହିଁକି ?"

ଭଦ୍ରଲୋକ କହିଲେ, "ମୋର ଥଳିର ବିଶେଷତ୍ୱ ଅଛି । ତାହା ସାଧାରଣ ଥଳିଟିଏ ବୋଲି ବିଚାର ନାହିଁ । ତୁମେ ଯଦି କାହାକୁ ଲକ୍ଷ୍ୟ କରି ଥଳିରେ ପଶିବା ପାଇଁ କହିବ, ସେ ତହିଁରେ ବନ୍ଦୀ ହୋଇଯିବ । ତୁମେ ନ କହିଲାଯାଏ ତାର ମୁକ୍ତି ନାହିଁ ।"

ବିକ୍ରମ ଏହି କଥା ଶୁଣି କହିଲା, "ଏପରି ଏକ ମେଜିକ୍ ଥଳି ଆପଣ ମୋତେ ଦେବାର ଉଦ୍ଦେଶ୍ୟ କ'ଣ ?"

ଭଦ୍ରଲୋକ କହିଲେ, "ମୋ ପାଖରେ ଏହି ଥଳି ବହୁତ ଦିନ ରହିଲାଣି । ମୋର ଇଚ୍ଛା, ତୁମ ପରି ଜଣେ ଯୁବକ ତାର ବ୍ୟବହାର କରୁ ।"

ଏହି ସମୟରେ ହୋଟେଲର ମାଲିକ ଆସି ବିଲ୍ ବଢ଼ାଇଦେଲା ଏବଂ ବିକ୍ରମକୁ ତାର ପ୍ରାପ୍ୟ ମାଗିଲା । ହୋଟେଲର ଖାଦ୍ୟ କିନ୍ତୁ ଭଲ ନ ଥିଲା । ହୋଟେଲ ମାଲିକ ବାସି, ସଢ଼ା ଖାଦ୍ୟ ଦେଇ ପଇସା ମାଗୁଥିଲା । ବିକ୍ରମ କହିଲା, "ତୁମେ ଏଇଭଳି ଖରାପ ଖାଦ୍ୟ ଦେଇ ଗରାଖମାନଙ୍କୁ ଠକୁଛ । ତୁମକୁ କିଛି ପଇସା ଦିଆଯିବ ନାହିଁ ।"

ଏହା ଶୁଣି ହୋଟେଲ ମାଲିକ ରାଗି ଯାଇ କହିଲା, "ମୁଁ ଦେଖିବି, ତୁମେ କିପରି ମୋର ପ୍ରାପ୍ୟ ନ ଦେଇ ହୋଟେଲରୁ ବାହାରି ଯିବ ।"

ବିକ୍ରମ 'ମେଜିକ୍ ଥଳି'ର କରାମତି ପରୀକ୍ଷା କରିବା ପାଇଁ କହିଲା, ''ହେ ହୋଟେଲ ମାଲିକ, ମୋ ଥଳିରେ ପଶିଯା ।''

ଚାହୁଁ ଚାହୁଁ ହୋଟେଲ ମାଲିକ ଥଳି ଭିତରେ ବନ୍ଦୀ ହୋଇଗଲା । ସେ ଖାଲି ଚିତ୍କାର କରି କହୁଥାଏ, ''ତୋତେ ମୁଁ ଦେଖିନେବି ।'' କେତେ ସମୟ ଚିତ୍କାର କରି କରି ସେ ହାଲିଆ ହୋଇପଡ଼ିଲା । ତାର ଥଳି ଭିତରୁ ବାହାରିବାର ଆଉ ଉପାୟ ନାହିଁ । ଶେଷକୁ ହତାଶ ହୋଇ ପ୍ରାର୍ଥନା କଲା, ''ମୋତେ ଏଥିରୁ ଉଦ୍ଧାର କର । ମୁଁ ଆଉ ପଇସା ମାଗିବି ନାହିଁ । ଖରାପ ଜିନିଷ କାହାକୁ ଦେବିନାହିଁ ।''

ଏହା ଶୁଣି ବିକ୍ରମ କହିଲା, ''ଏଥର ଥଳିରୁ ବାହାରି ଆସ ।'' କହିଲା ମାତ୍ରକେ ଥଳି ଖୋଲିଗଲା ଓ ହୋଟେଲ ମାଲିକ ଆନନ୍ଦରେ ନିଃଶ୍ୱାସ ମାରିଲା ।

ଆଉ ଦିନକର କଥା । ବିକ୍ରମ ଗୋଟିଏ ହୋଟେଲରେ ଖାଉଥାଏ । ତା' ପାଖରେ ଜଣେ ଭଦ୍ରଲୋକ ମଧ୍ୟ ଖାଉଥାଆନ୍ତି । କଥା ପ୍ରସଙ୍ଗରେ ସେ ବିକ୍ରମ ଆଗରେ ବାହାଦୂରୀ କରି କହିଲା, ''ମୋ ପାଖରେ ଏକ ମେଜିକ୍ ବଟୁଆ ଅଛି । ସେଥିରୁ ଯେତେ ଟଙ୍କା ଖର୍ଚ୍ଚ କଲେ ମଧ୍ୟ ସରିବ ନାହିଁ ।''

ବିକ୍ରମକୁ ବଡ଼ ତାଜୁବ୍ ଲାଗିଲା । ସେ କହିଲା, ''ତାହାହେଲେ ଆପଣଙ୍କର ଆଉ ଅଭାବ କ'ଣ ? ବର୍ତ୍ତମାନ ଏଠାରେ ଯେତେଜଣ ଗରିବଲୋକ ଖାଉଛନ୍ତି ତାଙ୍କ ପାଇଁ ମଧ୍ୟ ହୋଟେଲବାଲାକୁ ପଇସା ଦେଇ ଦିଅନ୍ତୁ ।''

ସେ ଭଦ୍ରଲୋକ କିନ୍ତୁ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । ମଜା ଦେଖିବା ପାଇଁ ବିକ୍ରମ ଆଦେଶ ଦେଲା, ''ମେଜିକ ଥଳିରେ ପଶି ଯାଅ ।'' କହିବା ମାତ୍ରକେ ଭଦ୍ରଲୋକ ଥଳି ଭିତରେ ବନ୍ଦୀ ହୋଇଗଲେ । ଆଉ ବାହାରିବାର ଉପାୟ ନାହିଁ । ଧୀରେ ଧୀରେ ସେ ଅଣନିଃଶ୍ୱାସୀ ହୋଇ ଯାଉଥାଆନ୍ତି । ମୁକ୍ତି ପାଇବାର ଉପାୟ ନ ଦେଖି ସେ କହିଲେ, ''ମୋତେ ଏଥିରୁ ଉଦ୍ଧାର କର । ମୁଁ ତୁମକୁ ମେଜିକ୍ ବଟୁଆଟି ଦେଇଦେବି ।''

ବିକ୍ରମ ଆଦେଶ ଦେଲା, ''ଏଥର ବାହାରି ଆସ ।'' ମ୍ୟାଜିକ୍ ବଟୁଆ ବିକ୍ରମ ହାତରେ ଧରାଇ ଭଦ୍ରଲୋକ ବାହାରିଗଲେ ।

ବିକ୍ରମର କିଛି ଅଭାବ ନ ଥାଏ । ମେଜିକ୍ ବଟୁଆ ଓ ମେଜିକ ଥଳି ଦୁଇଟି ତାର ସାଥୀ । ଦେଶର ଚାରିଆଡ଼େ ଭ୍ରମଣ କରି କେତେ ଲୋକଙ୍କୁ ସାହାଯ୍ୟ କରୁଥାଏ । ଦୁଷ୍ଟମାନଙ୍କୁ ଦଣ୍ଡ ଦେଉଥାଏ । ଭୋକିଲା ଲୋକଙ୍କୁ ଖାଇବାରେ ସାହାଯ୍ୟ କରେ । ଏଇମିତି ଅନେକ ଦିନ ବିତିଗଲା । ଏଥର ତାର ମନ ଡାକିଲା ରାଜଧାନୀକୁ ଫେରି ଆସିବା ପାଇଁ ।



ବିକ୍ରମ ଯେଉଁଦିନ ରାଜଧାନୀରେ ପହଞ୍ଚିଲା, ଦେଖିଲା କାହାରି ମନରେ ସୁଖ ନାହିଁ । ରାଜ୍ୟର ଲୋକମାନେ କିଛି ଗୋଟାଏ ବିପଦକୁ ଅପେକ୍ଷା କରି ରହିଛନ୍ତି । ସେ ଯାଇ ଜଣେ ବୃଦ୍ଧଲୋକଙ୍କୁ ଘଟଣାଟି ଜାଣିବା ପାଇଁ ପଚାରିଲା । ସେ କହିଲେ, ''ବାବୁରେ ! ଆଜି ରାତିରେ ଏକ ଅସୁର ଆସି ରାଜକନ୍ୟାଙ୍କୁ ଧରି ନେଇଯିବ । ସେଥିପାଇଁ ସମସ୍ତଙ୍କ ମନରେ ଦୁଃଖ ।'' ବୃଦ୍ଧ ଜଣକ କାରଣ କ'ଣ କହିପାରିଲେ ନାହିଁ ।

ବିକ୍ରମ ତୁରନ୍ତ ଯାଇ ରାଜାଙ୍କୁ ସାକ୍ଷାତ କଲା । ପଚାରିବାରୁ ରାଜା କହିଲେ, ''ବହୁତ ଦିନ ପୂର୍ବେ ବଣରେ ଶିକାର କରିବାବେଳେ ବିପଦରେ ପଡ଼ିଥିଲି । ଗୋଟିଏ ଅସୁର ମୋତେ ଉଦ୍ଧାର କରି ମୋ'ଠାରୁ ସତ୍ୟ କରାଇ ନେଇଥିଲା, 'ଯେଉଁଦିନ ମୋ ଝିଅକୁ କୋଡ଼ିଏ ବର୍ଷ ହେବ, ସେହିଦିନ ସେ ତାକୁ ନେଇଯିବ ।'

''ଆଜି ମୋ ଝିଅକୁ କୋଡ଼ିଏ ବର୍ଷ ପୂରିଯାଉଛି । ବର୍ତ୍ତମାନ ଅସୁରର ପାଳି । ସେହିଦିନ ମୁଁ ଅସହାୟ ଥିଲି । ଆଜି ମଧ୍ୟ ମୋର କୌଣସି ଉପାୟ ନାହିଁ । ରାଜକନ୍ୟାକୁ ନ ନେଲେ ସେ ମୋ ରାଜ୍ୟ ଲୋକଙ୍କର ଅମଙ୍ଗଳ କରିବ ।''

''ଆପଣ ରାଜକନ୍ୟାଙ୍କ ଶୋଇଲାଘର ପାଖକୁ ଲାଗି ମୋର ରହିବା ପାଇଁ ବନ୍ଦୋବସ୍ତ କରି ଦିଅନ୍ତୁ । ମୋତେ ଗୋଟିଏ ଠେଙ୍ଗା ଦେବେ । ମୋ ଘରର ବାହାର ଝରକାଟି ଖୋଲା ରଖିବାକୁ ଆପଣ ଆଦେଶ ଦେବେ ।''

ରାଜାଙ୍କର ତ ଅନ୍ୟ ଉପାୟ ନ ଥିଲା । ବିକ୍ରମ କହିବା ଅନୁସାରେ ସେ ସବୁ ବ୍ୟବସ୍ଥା କରିଦେଲେ । ରାତିରେ ଅନ୍ଧାର ମାଡ଼ି ଆସିଲା । ଝରକା ପାଖରେ ମେଜିକ୍ ଥଳିଟି ଖୋଲି ଦେଇ ବିକ୍ରମ ଅପେକ୍ଷା କରି ବସିଥାଏ । ରାତି ପହରକ ସରିକି ଭୟଙ୍କର ଗର୍ଜ୍ଜନ ଶୁଣାଗଲା । ରାଜଧାନୀର ଲୋକେ ଭୟରେ ଥରହର । ଅସୁର ଯେମିତି ଆସି ବିକ୍ରମର ଖୋଲା ଝରକା ପାଖରେ ପହଞ୍ଚିଯାଇଛି, ସେ ଆଦେଶ ଦେଲା, 'ମେଜିକ୍ ଥଳିରେ ପଶିଯାଆ ।'

ଅସୁର ବନ୍ଦୀ ହୋଇଗଲା । ଏପରି ଅଚାନକ ବିପଦ ପ୍ରତି ସେ ଆଦୌ ପ୍ରସ୍ତୁତ ନ ଥିଲା । ବିକ୍ରମ ଏଥର ଘରେ ଆଲୁଅ ଜାଳି ଦେଲା । ଥଳି ଭିତରୁ ଅସୁର କହିଲା, ''ତୁ କିଏ ? ମୋତେ କାହିଁକି ବନ୍ଦୀ କଲୁ ?''

ବିକ୍ରମ କହିଲା, ''ମୁଁ ତୋ ଯମ । ରାଜା, ରାଜକୁମାରୀ କି ରାଜ୍ୟର ଲୋକ କାହାରି କିଛି ଯଦି ଅନିଷ୍ଟ ନ କରି ବହୁ ଦୂରକୁ ପଳାଇବୁ, ତେବେ ଛାଡ଼ିଦେବି । ନ ହେଲେ ପିଟିପିଟି ମାରିଦେବି ।''

ଅସୁର କ୍ରୋଧରେ ଅସ୍ଥିର । ଛାଟିପିଟି ହେଉଥାଏ । ସେ କହିଲା, ''ଏ ବିଷୟରେ ତୁ କିଏ ? ରାଜା ମୋ ସହିତ ଚୁକ୍ତି କରିଛି । ତାର କନ୍ୟାକୁ ଯେଉଁଦିନ କୋଡ଼ିଏ ବର୍ଷ ପୂରିବ, ସେ ମୋ ହାତରେ ଦେବ । ଆଜି ସେହି ସୁଯୋଗ ଆସି ପହଞ୍ଚିଛି । ଏଥିରେ କେହି ବାଧା ଦେଲେ ମୁଁ ତାକୁ ଉଚିତ ଶିକ୍ଷା ଦେବି ।''

ବିକ୍ରମ ହସି ହସି କହିଲା, ''ତାହା ତ ଜଣାପଡୁଛି ।'' ଏତିକି କହି ଅସୁରକୁ ଠେଙ୍ଗାରେ ପିଟିବାକୁ ଲାଗିଲା । ଅସୁରର ବାହାରିବାର ଉପାୟ ନାହିଁ । ମାଡ଼ ଖାଇ ଖାଇ ସେ ଦରମରା ହୋଇଗଲା । କାନ୍ଦି କାନ୍ଦି କହିଲା, ''ଭାଇ ! ତୋ କଥା ମୁଁ ରଖିବି । ମୋତେ ଛାଡ଼ି ଦେ ।'' ଏଥର ବିକ୍ରମ ମେଜିକ୍ ଥଳିକୁ ଆଦେଶ ଦେଲା, ''ଅସୁରକୁ ଛାଡ଼ିଦିଅ ।''

ଅସୁର ପ୍ରାଣ ବିକଳରେ ରାଜ୍ୟ ଛାଡ଼ି ଚାଲିଗଲା । ରାଜା ଓ ରାଜପାରିଷଦଗଣ ସମସ୍ତେ ଶାନ୍ତିରେ ନିଃଶ୍ୱାସ ମାରିଲେ । ସମସ୍ତେ ବିକ୍ରମକୁ ଧନ୍ୟ ଧନ୍ୟ କଲେ । ରାଜାଙ୍କର ପୁଅ ନ ଥିଲା । ସେ ନିଜର ଏକମାତ୍ର କନ୍ୟାକୁ ବିକ୍ରମ ସହିତ ବାହା କରାଇଦେଲେ । ରାଜାଙ୍କ ଅନ୍ତେ ବିକ୍ରମ ସିଂହାସନରେ ବସି ସୁଖରେ ପ୍ରଜା ପାଳିଲା । ମେଜିକ୍ ଥଳି ଓ ମେଜିକ୍ ବଟୁଆ ଯୋଗୁଁ ରାଜ୍ୟରେ କିଛି ଅଭାବ ରହିଲା ନାହିଁ । ପ୍ରଜାମାନେ ନିର୍ଭୟରେ କାଳ କାଟିଲେ ।

ଓଁଓଁଓଁ

# ଋଣ ପରିଶୋଧ

ଜଣେ ଜମିଦାର ଥିଲେ । ଦୀର୍ଘପ୍ରସ୍ଥ ଚଉଦକୋଶ ତାଙ୍କର ଜମିଦାରୀ । ତାଙ୍କ ଜମିଦାରୀରେ କେତେ ଜମିଜମା, ଜଙ୍ଗଲ, ନଈ, ନାଳ, କୂଅ, ପୋଖରୀ ଓ ବାମ୍ଫୀ । ପ୍ରଜାମାନେ ତାଙ୍କୁ ଆଦରରେ 'ରାଜା' ବୋଲି ଡାକନ୍ତି । ରାଜା ଥିଲେ ବଡ଼ ଦୟାଳୁ ଓ ଉପକାରୀ । କାହାରି ଦୁଃଖ ସହିପାରନ୍ତି ନାହିଁ । ସେ ଥିଲେ ପ୍ରଜାମାନଙ୍କର ବାପା' ମା' । ପ୍ରଜାମାନଙ୍କ ପାଇଁ ରାଜମହଲରେ ଫାଟକ ସବୁବେଳେ ଖୋଲାଥାଏ । ଅସମୟରେ ମଧ ପ୍ରଜାମାନେ ରାଜାଙ୍କ ପାଖରେ ଦୁଃଖ ଜଣାନ୍ତି ।

ରାଜାଙ୍କର ଗୋଟିଏ ବୋଲି ପୁଅ ମହେନ୍ଦ୍ର କୁମାର । ପିଲାଦିନୁ ଅଲିଅଳରେ ବଢ଼ିଥିଲେ । ସବୁବେଳେ ବିଳାସବ୍ୟସନରେ ଦିନ କାଟୁଥିଲେ । ମଉଜମଜଲିସ୍ କରିବା ପାଇଁ ସାଙ୍ଗସାଥୀ ମଧ ଜୁଟି ଯାଉଥିଲେ । ରାଜକାର୍ଯ୍ୟ ବୁଝିବା ପାଇଁ ସେ କେବେହେଲେ ଆଗ୍ରହୀ ହେଉନଥିଲେ । ଫୁରସତ୍ ଅବା କାହିଁ ?

ହଠାତ୍ ଦିନେ ଜମିଦାର ଅସୁସ୍ଥ ହୋଇ ପଡ଼ିଲେ । କେତେ ଡାକ୍ତର କବିରାଜ ଲାଗି ପଡ଼ିଲେ । ହେଲେ ପ୍ରଜାମାନଙ୍କର ପ୍ରିୟ ରାଜାଙ୍କୁ କେହି ରଖିପାରିଲେ ନାହିଁ । ସେ ଚିରଦିନ ପାଇଁ ଆଖି ବୁଜିଦେଲେ ।

ଜମିଦାରୀର ଉତ୍ତରାଧିକାରୀ ହେଲେ ମହେନ୍ଦ୍ରକୁମାର । ଅକଳନ ଧନସମ୍ପତ୍ତି, ଜମି ବାଗବଗିଚାର ମାଲିକ । ରାଜା ଯେ ପ୍ରଜାଙ୍କର ସେବକ, ତାଙ୍କର ସୁଖ ଦୁଃଖର ସାଥୀ, ଏହି କଥା ମହେନ୍ଦ୍ରକୁମାର ଭୁଲିଗଲେ । ଖୁସାମୋଦିଆ ଲୋକମାନଙ୍କ ଗହଣରେ ସେ କେବଳ ଭୋଗ ବିଳାସରେ ମାତିରହିଲେ । ଏଇମିତି ଚାହୁଁ ଚାହୁଁ ବରଷଟିଏ ବିତିଗଲା । ସେ ବାପାଙ୍କର ଶ୍ରାଦ୍ଧ ଦେବାପାଇଁ ମଧ ଭୁଲିଗଲେ ।

ବାପା ବୋଉ କେତେ ସ୍ନେହରେ ପିଲାଙ୍କୁ ପାଳନ କରନ୍ତି, ଉପଯୁକ୍ତ ମଣିଷ ହେବା ପାଇଁ ସାହାଯ୍ୟ କରନ୍ତି । ତାଙ୍କ ମୃତ୍ୟୁପରେ ଅର୍ଜିତ ସମ୍ପତ୍ତିର ଅଧିକାରୀ ହୁଅନ୍ତି ସନ୍ତାନମାନେ । ସେମାନେ ଜୀଇଥିଲାବେଳେ ବାପାବୋଉଙ୍କର ଯେପରି ସେବା କରିବା ଉଚିତ, ମରିଗଲା ପରେ ତାଙ୍କର ଆତ୍ମାର ଶାନ୍ତି ପାଇଁ ମଧ ଶ୍ରାଦ୍ଧ ଓ ଦାନ-ପୁଣ୍ୟ କରିବା ଆବଶ୍ୟକ । ନୂତନ ରାଜପଦରେ ରହି ମହେନ୍ଦ୍ରକୁମାର ନିଜର କର୍ତ୍ତବ୍ୟ ଭୁଲିଗଲେ । ତେଣେ ପରଲୋକରେ ବୃଦ୍ଧ ଜମିଦାରଙ୍କ ଆତ୍ମାକୁ ଶାନ୍ତି ମିଳିଲା ନାହିଁ । ତାଙ୍କ ଆତ୍ମାର ଶାନ୍ତି ପାଇଁ ପୁଅ ମହେନ୍ଦ୍ର କୁମାର ଶ୍ରାଦ୍ଧ ଓ ଦାନ, ପୁଣ୍ୟ କରିବାକୁ ଭୁଲିଗଲେ ।

ରାଜାଙ୍କର ଘରୋଇ ଶ୍ମଶାନ ପାଖରେ ମହାଦେବଙ୍କର ମନ୍ଦିରଟିଏ । ପାଖରେ ସୁନ୍ଦର ପୋଖରୀ, କାଚକେନ୍ଦୁ ପରି ପାଣି । ଯିବା ଆସିବା ବାଟରେ କେତେ ଦୁଃଖୀ,

ରଙ୍କି, ପଥିକ ସେହି ମନ୍ଦିର ବେଢ଼ାରେ ଆଶ୍ରୟ ନିଅନ୍ତି । ମନ୍ଦିରକୁ ଲାଗିଥିବା ପୋଖରୀରେ ଗାଧୋଇ ଥାଆନ୍ତି । ଦିନକର କଥା । ସେହି ସହରରେ ଜଣେ ଶ୍ରମିକ ଆସି ମନ୍ଦିର ବେଢ଼ାରେ ବିଶ୍ରାମ କଲା । ଠାକୁରଙ୍କୁ ପ୍ରଣାମ କଲାବେଳେ ଜଣାଣ କରୁଥାଏ, ‘‘ହେ ପ୍ରଭୁ ! ମୁଁ ଏବେ କଅଣ କରିବି ? ମୋର ପରିବାର କିପରି ଚଳିବେ ? ମୋର ମାଲିକ ମୋତେ ଚାକିରୀରୁ ବରଖାସ୍ତ କରିଦେଲା । ମୋ’ଠାରୁ ଆଉ କିଏ ଦୁଃଖୀ ଅଛି ଏ ସଂସାରରେ ? ଆସନ୍ତା ଦିନଗୁଡ଼ିକ ମୋର କିପରି କଟିବ ?’’

ସନ୍ଧ୍ୟା ମାଡ଼ି ଆସୁଥାଏ । ଶ୍ରମିକ ଜଣକ ତରତର ହେଲା ଘରକୁ ଫେରି ଆସିବାପାଇଁ । ମନ୍ଦିରରୁ ଆସିବା ବାଟରେ ଶେଷ ପାହାଚରେ ଜଣେ ଲୋକ ବସିଥିବାର ଦେଖିଲା । ସେ କହୁଥାଏ, ‘‘ବାବୁ, କିଛି ସାହାଯ୍ୟ କର । ଯେଉଁମାନଙ୍କୁ କେହି ଶ୍ରାଦ୍ଧ ଦେଉନାହାନ୍ତି, ସେମାନେ ଅମୋକ୍ଷ । ତୁମେ କିନ୍ତୁ ପଇସା ଦେଲେ ସେମାନଙ୍କୁ ଶ୍ରାଦ୍ଧ ଦିଆଯିବ ।’’

ଶ୍ରମିକ ବିଚରା ଆଶ୍ଚର୍ଯ୍ୟ ହେଲା । ବିଚାରିଲା, ତାହାଠାରୁ ମଧ ଦୁଃଖୀ ଲୋକ ଏ ସଂସାରରେ ଅଛନ୍ତି । ତା ପକେଟ ଦରାଣ୍ଡିଲା ଟଙ୍କାଟିଏ ମାତ୍ର ଅଛି । କିଛି ଆଗକୁ ପଛକୁ ନ ଭାବି ଟଙ୍କାଟି କାଢ଼ି ସେହି ଲୋକଟି ହାତରେ ଧରାଇଦେଲା ।

ଏହାପରେ ଶ୍ରମିକ ଜଣକ ବାହାରିପଡ଼ିଲା ରାସ୍ତା ଉପରକୁ । ଆନମନା ହୋଇ ଚାଲିଥାଏ । ବେଳେବେଳେ ନିଜର ଅଭାବ ଓ ଦୁଃଖରେ ଘାରି ହେଉଥାଏ । ସେ ତା’ ଆଗରେ ଜଣେ ଭଦ୍ରଲୋକ ଠିଆହୋଇଥିବାର ଦେଖିଲା । ସେ ଅତ୍ୟନ୍ତ ମୂଲ୍ୟବାନ ପୋଷାକ ପିନ୍ଧିଥିଲେ । ଭଦ୍ରବ୍ୟକ୍ତି ଜଣକ ଜଣେ ଧନୀଲୋକ ପରି ଜଣାପଡୁଥିଲେ ।

ସେ କାହାରିକୁ ନଜର ନ କରି ଆଗକୁ ପାଦ ପକାଇଲା । ଏତିକିବେଳେ ଭଦ୍ରଲୋକ ଜଣକ ତାକୁ କିଛି କହିବାକୁ ଯାଉଥିଲେ । ଶ୍ରମିକ ବିଚାରିଲା, ମୋ ପରି ଦରିଦ୍ର ଲୋକ ପାଖରେ କାହାର କ’ଣ କିଛି କାମ ଥାଇପାରେ ! କିଛି ନ ଶୁଣି ସେ ଆଗକୁ ପାଦ ବଢ଼ାଇଲା ।

ଏଥର ଭଦ୍ରବ୍ୟକ୍ତି ଜୋର ଦେଇ ଡାକ ପକାଇଲେ । ଶ୍ରମିକ ପଛକୁ ଚାହିଁ ଅଟକି ରହିଲା । ବାସ୍ତବିକ୍ ଭଦ୍ରବ୍ୟକ୍ତି ତାରି ଉଦ୍ଦେଶ୍ୟରେ କ’ଣ କହିବାକୁ ଚାହୁଁଥିଲେ । ସେ ପାଖକୁ ଆସି କହିଲେ, ‘‘ତୁମେ ମୋର ଏତେ ଉପକାର କରିଛ । ବର୍ତ୍ତମାନ କଥା ନ କହି ଚାଲିଯାଉଛ ?’’

ଆଶ୍ଚର୍ଯ୍ୟ ହେଲା ଶ୍ରମିକ ଜଣକ । ସେ ତ ଅଭାବୀ ଲୋକ । ତା’ ହାତରେ ବା କାହା ପାଇଁ କ’ଣ ଉପକାର ହୋଇପାରିବ ?

ଭଦ୍ରଲୋକ ଜଣକ ଟିକିଏ ମୁରୁକି ହସି କହିଲେ—‘‘ହଉ ହେଲା । ତମେ ମୋ ପାଇଁ ଗୋଟିଏ କାମ କରିଦେଲେ ଉପକୃତ ହେବି ।’’

ଶ୍ରମିକ ଜଣକ କହିଲା—''କହନ୍ତୁ, ଯଦି ମୋ' ଦ୍ୱାରା କିଛି କାର୍ଯ୍ୟ ହୋଇପାରିବ, ତେବେ ନ କରିବି କାହିଁକି ?''

ଭଦ୍ରଲୋକ ଶ୍ରମିକ ହାତକୁ ଖଣ୍ଡିଏ ଚିଠି ବଢ଼ାଇ ଦେଲେ । କହିଲେ—''ତୁମେ ଏଇ ଚିଠିଟି ନେଇ ଜମିଦାର ମହେନ୍ଦ୍ରକୁମାରଙ୍କ ହାତରେ ଦେବ । ମନେରଖ, ଚିଠିଟି ଯେପରି ଅନ୍ୟ କାହା ହାତରେ ନ ପଡ଼େ । ସିଧାସଳଖ ଜମିଦାରଙ୍କୁ ହିଁ ଦେଇଦେବ ।''

ଶ୍ରମିକ ଜଣକ ହଁ ଭରି ଆଗକୁ ଚାଲିଲା । ଭଦ୍ରଲୋକ କୁଆଡ଼େ ଗଲେ, ସେ ବିଷୟରେ ମୁଣ୍ଡ ଖେଳାଇଲା ନାହିଁ ।

ଶେଷରେ ଶ୍ରମିକ ଯାଇ ନିଜ ଘରେ ପହଞ୍ଚିଲା । ଛୋଟ କୁଡ଼ିଆଟିରେ ତାର ସ୍ତ୍ରୀ ଅପେକ୍ଷା କରିଥିଲା । କିଛି ସମୟ ବିଶ୍ରାମ କରି ପୁନର୍ବାର ସହରକୁ ଯିବାପାଇଁ ସ୍ତ୍ରୀଠାରୁ ବିଦାୟ ମାଗିଲା । ଏଠାରେ ତାର ଯେ ରୋଜଗାରର ଆଉ କିଛି ବାଟ ନାହିଁ, ଏହି କଥା ସ୍ତ୍ରୀକୁ କହିଲା ନାହିଁ । କାଳେ ଶୁଣିଲେ ସେ ଦୁଃଖରେ ଭାଙ୍ଗି ପଡ଼ିବ । ସେ ଆଶା କରୁଥିଲା, ଚିଠିଟି ନେଇ ଜମିଦାରଙ୍କୁ ଦେଲେ ସେ ଖୁସି ହେବେ । ତାର ହୁଏତ ଭାଗ୍ୟ ବଦଳି ଯାଇପାରେ ।

ଦୁଇଦିନ ବାଟରେ କଟାଇ ଶେଷରେ ଶ୍ରମିକ ଯାଇ ସହରରେ ପହଞ୍ଚିଲା । ପଚାରି ପଚାରି ଜମିଦାର ମହେନ୍ଦ୍ରକୁମାରଙ୍କ ଉଆସ ଠାବ କରିପାରିଲା । କେଡ଼େ ବଡ଼ କୋଠାଘର ! ଆଖି ପାଉନାହିଁ । ଚାରିଆଡ଼େ ମେଘନାଦ ପାଚିରି ଘେରି ରହିଛି । ଚବିଶଘଣ୍ଟା ପ୍ରହରୀ ବାହାର ଫାଟକରେ ଜଗି ରହିଛନ୍ତି ।

ଶ୍ରମିକ ପ୍ରଥମେ ଫାଟକ ପାଖରେ ଠିଆହେଲା ଓ ଅପେକ୍ଷା କଲା । ଜଗୁଆଳିମାନେ ତାର ଆସିବାର କାରଣ ପଚାରିଲେ । ସେ ଉତ୍ତର ଦେଲା—''ଜମିଦାରଙ୍କ ପାଇଁ ଏକ ଚିଠି ଆଣିଛି ।'' ପ୍ରହରୀ ଚିଠିଟି ମାଗିଲା । ମାତ୍ର ଶ୍ରମିକଟି ବାରଣ କଲା । ସେ ନିଜେ ଜମିଦାରଙ୍କୁ ଭେଟି ଚିଠିଟି ଦେବ ବୋଲି କହିଲା ।

ପ୍ରହରୀ ଦୁଆର ଖୋଲି ଶ୍ରମିକଙ୍କୁ ଭିତର ଖଞ୍ଜାକୁ ନେଇଗଲା । ସେଠାରେ ଦେବାନଙ୍କର ଅଫିସ । ସେଠାରେ ମଧ ପ୍ରହରୀ ଜଗି ରହିଛନ୍ତି । ଜଣେ ସାଧାରଣ ଲୋକଙ୍କୁ ଦେଖି ପ୍ରହରୀ ଜଣକ ମାଡ଼ି ଆସିଲା । କହିଲା, ''କଅଣ ତୁମର କାମ ? କାହାପାଖରେ ତୁମର ଫେରାଦ କରିବା ପାଇଁ ଅଛି ? ବର୍ତ୍ତମାନ ଦେବାନ ସାହାବଙ୍କ ସହିତ ସାକ୍ଷାତ ହୋଇପାରିବ ନାହିଁ । ସେ ଜରୁରୀ ଅଫିସ୍ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି ।''

ଆଗନ୍ତୁକ ଜଣକ କହିଲା, ''ମୋର ଦେବାନଙ୍କ ପାଖରେ କିଛି କାମ ନାହିଁ । ମୋତେ ଜମିଦାରଙ୍କ ସହିତ ଭେଟ କରାଇ ଦିଅନ୍ତୁ । ତାଙ୍କୁ ଖଣ୍ଡିଏ ଚିଠି ଦେବି ବୋଲି ଆଣିଛି ।''

ପ୍ରହରୀ ଅତ୍ୟନ୍ତ କଡ଼ା ସ୍ୱରରେ କହିଲା—''ତୋର ସାହସ ତ କମ୍ ନୁହେଁ । ଜମିଦାରଙ୍କର ଆଉ କିଛି କାମ ନାହିଁ । ତୋଠାରୁ ଚିଠି ନେବେ ବୋଲି ଅନାଇ ବସିଛନ୍ତି ? ଚିଠିଟି ଆମକୁ ଦିଅ । ଆମେ ଠିକ୍ ସମୟରେ ମଣିମାଙ୍କ ହାତରେ ପହଞ୍ଚାଇ ଦେବୁ ।''

ଆଗନ୍ତୁକ କହିଲା, ''ମୋତେ ଆପଣମାନେ କାହିଁକି ବାଧ କରୁଛନ୍ତି ? ଚିଠିଟି ମୁଁ ନିଜେ ଜମିଦାରଙ୍କୁ ଦେବି । ନଚେତ୍ ଫେରାଇ ନେବି ।''

ଏହା ଶୁଣି ଦେବାନ ଓ ପ୍ରହରୀ ଆଗନ୍ତୁକ ଠାରୁ ଚିଠିଟି ଛଡ଼ାଇବା ପାଇଁ ଉଦ୍ୟମ କଲେ । ଟଣାଓଟରା ଓ ପାଟିଗୋଳ ଶୁଣି ନିଜେ ଜମିଦାର ବାରଣ୍ଡାକୁ ବାହାରି ଆସିଲେ । ଦେଖିଲେ, ଜଣେ ଗାଉଁଲି ଲୋକକୁ ପ୍ରହରୀ ଓ ଦେବାନ କଟାଳ କରୁଛନ୍ତି ।

ଜମିଦାର ପହଞ୍ଚିବାରୁ ସମସ୍ତେ ଛାଡ଼ବାଡ଼ ହୋଇଗଲେ । ସବୁକଥା ଶୁଣି ସାରି ମହେନ୍ଦ୍ରକୁମାର ଆଗନ୍ତୁକକୁ ଉଆସ ଭିତରକୁ ଡାକିନେଲେ । ତାରି ହାତରୁ ଚିଠିଟି ନେଇ ସେ ଯେମିତି ଚିଠିର ହସ୍ତାକ୍ଷର ଉପରେ ନଜର ରଖିଛନ୍ତି, ଭୟରେ ତାଙ୍କର ମୁହଁ ଝାଉଁଳି ଗଲା । ଏହା ତ ତାଙ୍କ ମୃତ ପିତାଙ୍କର ହସ୍ତାକ୍ଷର । ତାଙ୍କ ଲିଖିତ ଚିଠି ଚିହ୍ନିବାରେ ସନ୍ଦେହର ଅବକାଶ ନାହିଁ । ମାତ୍ର ଏହା କିପରି ସମ୍ଭବ ହେଲା ? ଜଣେ ମୃତଲୋକ କ'ଣ ଚିଠି ଲେଖିପାରେ ?

ସେ ବଡ଼ ବ୍ୟଗ୍ର ହୋଇ ଆଗନ୍ତୁକକୁ ପଚାରିଲେ, ''ତୁମେ ଯାହାଙ୍କଠାରୁ ଚିଠି ଆଣିଲ, ତାଙ୍କୁ ଆଉ ଥରେ ଦେଖିଲେ ଚିହ୍ନି ପାରିବ ?''

ଆଗନ୍ତୁକ ହଁ କଲା । ସେ କହିଲା—''ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ? ତାଙ୍କ ସହିତ କଥା ହୋଇ ଫେରିଲି । ଦେଖିଲେ ଅବଶ୍ୟ ଚିହ୍ନି ପାରିବି ।''

ଉଆସ ଭିତରେ ଗୋଟିଏ ବଡ଼ ହଲ ଥିଲା । କେତେ ରଙ୍ଗରେ ତାହା ସଜା ଯାଇଛି । ଚାରିଆଡ଼େ ମୂଲ୍ୟବାନ ଗାଲିଚା ପଡ଼ିଛି । କାନ୍ଥରେ କେତେ ରାଜା ଜମିଦାରଙ୍କ ତୈଳଚିତ୍ର ଶୋଭା ପାଉଛି । ମହେନ୍ଦ୍ରକୁମାର ଆଗନ୍ତୁକକୁ ନେଇ ସେହି କକ୍ଷରେ ପ୍ରବେଶ କଲେ ଏବଂ ଗୋଟି ଗୋଟି କରି କାନ୍ଥରେ ଟଙ୍ଗା ହୋଇଥିବା ଫଟୋଗୁଡ଼ିକ ଦେଖାଇଲେ ।

ଆଗନ୍ତୁକ ଜଣକ ମନଦେଇ ଦେଖୁଥାଏ ଏବଂ ମୁଗ୍ଧ ହେଉଥାଏ । ହଠାତ୍ ସେ ଗୋଟିଏ ଫଟୋ ପାଖରେ ଅଟକିଗଲା ଏବଂ ଆଶ୍ଚର୍ଯ୍ୟ ହୋଇ ଦେଖିବାକୁ ଲାଗିଲା । ଜମିଦାର ମହେନ୍ଦ୍ରକୁମାର ତାକୁ ପଚାରିଲେ, ''କ'ଣ ଦେଖୁଛ ? ତୁମେ କ'ଣ ତାଙ୍କୁ ଚିହ୍ନିଛ ?''

ଆଗନ୍ତୁକ କହିଲା—''ଏହି ଭଦ୍ରଲୋକ ତ ମୋତେ କାଲି ଚିଠିଟି ଦେଲେ ଆପଣଙ୍କ ହାତରେ ଦେବାପାଇଁ । ଏଇ ଫଟୋରେ ତାଙ୍କର ଯେଉଁ ପୋଷାକ ଅଛି, କାଲି ତ ସେ ଅବିକଳ ତାକୁ ପିନ୍ଧିଥିଲେ ।''

ଜମିଦାର ମହେନ୍ଦ୍ରକୁମାର କାନ୍ଦି ପକାଇଲେ । କହିଲେ, ''ତୁମେ ଯାହାଙ୍କର ଚିଠି ଆଣିଦେଲ, ସେ ମୋର ବାପା । ବର୍ଷେ ହେଲା ମୃତ୍ୟୁବରଣ କଲେଣି । ତାଙ୍କର ହସ୍ତାକ୍ଷର ଚିହ୍ନିବାରେ ମୋର ଆଦୌ ଅସୁବିଧା ହୋଇନାହିଁ ।''

ଆଗନ୍ତୁକ ବିଚଳିତ ହେଲା । ଏହା କ'ଣ ସମ୍ଭବ !! କାଲି ଯାହାଙ୍କ ସହିତ କଥା ହେଉଥିଲା, ସେ ତାହାହେଲେ ଗୋଟିଏ ଭୂତ ? ସେ ଥକାମାରି ତଳେ ବସିପଡ଼ିଲା । ଭୂତ କଥା ଭାବିଲା ମାତ୍ରକେ ତା' ଦେହରୁ ଝାଳ ବୋହିଗଲା ।

ଜମିଦାର ଚିଠିଟି ପଢ଼ି ଶୁଣାଇଲେ—''ଆଦରର ପୁଅ ମୋର ! ଧନ ଦଉଲତରେ ବୁଡ଼ିରହି ତୁ ମୋତେ ଭୁଲିଗଲୁ । ଶ୍ରାଦ୍ଧଟିଏ ମଧ୍ୟ ଦେଲୁ ନାହିଁ । ମୋର ଆତ୍ମା ମୋକ୍ଷ ନ ହୋଇ ଘୂରି ବୁଲୁଥିଲା । ଏହି ଗରିବ ଲୋକଟି ଗତକାଲି ଶ୍ରାଦ୍ଧ ଉଦ୍ଦେଶ୍ୟରେ ତାର ଶେଷ କପର୍ଦ୍ଦକ ଦାନ କରିଛି । ମୋ ପରି ବହୁ ଅମୋକ୍ଷ ଆତ୍ମା ଉଦ୍ଧାର ପାଇଛନ୍ତି । ଗରିବ ହେଲେ ମଧ୍ୟ ତାର ମନ କେଡ଼େ ଉଦାର ! ତାର ଉପକାର ଆଦୌ ଶୁଝି ହେବନାହିଁ । ତାର ଚଳିବାର କୌଣସି ଉପାୟ ନାହିଁ । ତାର ପରିବାରର ଭରଣ ପୋଷଣର ଦାୟିତ୍ୱ ତୁ ନେବୁ । ତାହାହେଲେ ମୋର ଆତ୍ମା ଶାନ୍ତିରେ ରହିବ ।''

ଜମିଦାର ମହେନ୍ଦ୍ରକୁମାର ଅନୁତାପ କଲେ । ସେ ତାଙ୍କର ମୃତ ପିତାଙ୍କ ପ୍ରତି ଉପଯୁକ୍ତ କର୍ତ୍ତବ୍ୟ କରିପାରି ନାହାନ୍ତି । ଏହି ଗରିବ ଲୋକଟି ମୋର ଆଖି ଖୋଲି ଦେଇଛି ।

ସେ ସଙ୍ଗେ ସଙ୍ଗେ ଦେବାନଙ୍କୁ ଡାକି ଆଦେଶ ଦେଲେ—''ବଗିଚାକୁ ଲାଗି ଗୋଟିଏ ଘରେ ଆଗନ୍ତୁକର ରହିବା ପାଇଁ ବନ୍ଦୋବସ୍ତ କରିଦିଅ । ମଫସଲରୁ ତାର ପରିବାରକୁ ଅଣାଇବାର ବ୍ୟବସ୍ଥା କର । ତାର ସମସ୍ତ ଖର୍ଚ୍ଚ ଜମିଦାରୀ ବହନ କରିବ ।''

ଏଣେ ସେହି ଶ୍ରମିକକୁ ଜମିଦାର ବଗିଚାର ପ୍ରଧାନମାଳୀ କରିଦେଲେ । ସେ ରାଜାଙ୍କର ସେବା କରି ପରିବାର ସହ ସୁଖରେ ରହିଲା । ଜମିଦାର ମଧ୍ୟ ସେହିଦିନୁ ଦାନପୁଣ୍ୟ କରିବାକୁ କୁଣ୍ଠିତ ହେଲେ ନାହିଁ ।



# ମହନ୍ତ ଭୋଳାନାଥ





ଗଙ୍ଗାକୂଳରେ ଗୋଟିଏ ଛୋଟ ସହର । ସେଠାରେ ଅନେକ ମନ୍ଦିର ଆଉ ମଠ । ତୀର୍ଥସ୍ଥାନ ବୋଲି ବର୍ଷ ସାରା ଯାତ୍ରୀଗହଳି ଲାଗି ରହିଥାଏ । ବାରମାସରେ ତେର ପର୍ବ । କେତେ ଦୂର ଦେଶରୁ ସାଧୁ, ସନ୍ନ୍ୟାସୀ, ବଣିକ, ରାଜା, ଜମିଦାର ଏହି ସହରକୁ ଆସନ୍ତି ମନ ପରିବର୍ତ୍ତନ କରିବା ପାଇଁ । ତୀର୍ଥଯାତ୍ରୀଙ୍କଠାରୁ ମଠ ଓ ମନ୍ଦିରମାନଙ୍କର ଭଲ ଆୟ ହୋଇଥାଏ ।

ତେବେ ଗଙ୍ଗା କୂଳକୁ ଲାଗି ଗୋଟିଏ ମଠ ଥାଏ, ଯାହାର ମହନ୍ତ ଥିଲେ ବାବା ଭୋଳାନାଥ । ଭୋଳାନାଥଙ୍କ ମଠର ପ୍ରଚୁର ଆୟ । ଗଙ୍ଗାରେ ସ୍ନାନ କରି ଯେଉଁମାନେ ତୀର୍ଥବାସ କରନ୍ତି, ସେମାନେ ଅବଶ୍ୟ ଭୋଳାନାଥଙ୍କ ମଠରେ ପାଦ ପକାନ୍ତି । ଯେ ଯାହାର ଶକ୍ତି ଅନୁସାରେ ମଠକୁ ଦାନ କରି ଥାଆନ୍ତି । ତେଣୁ ବର୍ଷସାରା ମଠର ପ୍ରଚୁର ଆୟ ହେଉଥାଏ ।

ମହନ୍ତ ଭୋଳାନାଥ ସତରେ ବଡ଼ ଭୋଳା ମଣିଷ । ସବୁବେଳେ ହସଖୁସି, ମଉଜ ମଜଲିସ୍‌ରେ ତାଙ୍କର ଦିନ କଟୁଥାଏ । ମଠରେ ସେବା କରିବା ପାଇଁ ବହୁତ ସେବକ ଖଟୁଥାଆନ୍ତି । ମହନ୍ତଙ୍କର କିଛି କାମ ନ ଥାଏ । ସେ ନିଜର କେତେକ ସହଚରଙ୍କୁ ଧରି ଦିନରାତି ଖାଲି ପଶାଖେଳରେ ମାତି ଥାଆନ୍ତି । ଦୁନିଆର ଭଲ ମନ୍ଦ ବିଷୟରେ କୌଣସି ଖବର ରଖନ୍ତି ନାହିଁ । ରାଜା ଜମିଦାରଙ୍କ ପରି ମଉଜ କରି ଦିନ କାଟିବା ତାଙ୍କର ଅଭ୍ୟାସ ହୋଇଯାଇଥାଏ । ଏଥିରେ କିଛି ଶତ୍ରୁ ସୃଷ୍ଟି ହେବା ସ୍ୱାଭାବିକ । ଅନେକ ଲୋକ ଈର୍ଷାରେ ଜଳି ଯାଉଥାଆନ୍ତି; ସେମାନେ କେବଳ ସୁଯୋଗ ଅପେକ୍ଷାରେ ଥାଆନ୍ତି । କିପରି ହେଉ, ଭୋଳାନାଥଙ୍କର ସର୍ବନାଶ କରିବେ ।

ଥରେ ଗଙ୍ଗାରେ ବୁଡ଼ ପଡୁଥାଏ । ନାନା ଦେଶରୁ ତୀର୍ଥଯାତ୍ରୀ ଆସି ସେହି ସହରରେ ଏକାଠି ହେଉଥିଲେ । ସେହି ଦେଶର ରାଜା ବିଚାରିଲେ, ତୀର୍ଥଯାତ୍ରୀମାନଙ୍କର ହାନିଲାଭ ବୁଝିବା ତାଙ୍କର କର୍ତ୍ତବ୍ୟ । ତେଣୁ ସେ ଆସି ରାଜାଙ୍କର ବଙ୍ଗଳାରେ ଡେରା

ପକାଇ ରହିଲେ । ରାଜା ଆସିଛନ୍ତି ଶୁଣି ସହରର ଭଦ୍ରଲୋକ, ମନ୍ଦିରର ପୂଜକ ଶ୍ରେଣୀ ଏବଂ ମଠର ମହନ୍ତମାନେ ଆସି ରାଜାଙ୍କୁ ସାକ୍ଷାତ କରି ସମ୍ମାନ ଜଣାଉଥାଆନ୍ତି । ମହନ୍ତ ଭୋଳାନାଥ ତ ଭୋଳା ଲୋକ । ମଉଜ ମଜଲିସ୍ ବ୍ୟତୀତ ଆଉ କିଛି ଖବର ପାଇଁ ତାଙ୍କର ଆଗ୍ରହ ନ ଥାଏ । ତେଣୁ ରାଜ୍ୟର ରାଜା ଯେ ସହରକୁ ଆସିଛନ୍ତି, ଏହି ବିଷୟରେ ସେ ଅବା କାହିଁକି ଜାଣିବେ ?

ଭୋଳାନାଥଙ୍କୁ ଅନେକ ସହି ପାରୁନଥିଲେ । ଏ ହେଲା ଅସଲ ସୁଯୋଗ । ସେମାନେ ରାଜାଙ୍କ ପାଖରେ ଯାଇ ଭୋଳାନାଥଙ୍କ ବିରୋଧରେ କହିଲେ, ''ମଣିମା ! ଭୋଳାନାଥ ମହନ୍ତ ଆପଣଙ୍କୁ ବେଖାତିର କରୁଛି । ସହରର ଏତେ ଲୋକ ଆସିଲେ ଆପଣଙ୍କୁ ସାକ୍ଷାତ୍ କରିବା ପାଇଁ । ସେ ଆସିଲା ନାହିଁ । ସେ ତ ସବୁବେଳେ ମହାରାଜାଙ୍କ ପରି ଦାମିକା ପୋଷାକ ପିନ୍ଧି ବୁଲୁଥାଏ । ସବୁଦିନ ମଉଜମଜଲିସ୍ । ପଞ୍ଚାଏ ତୋଷାମୋଦିଆଙ୍କୁ ଧରି ଅଧିକାଂଶ ସମୟ ପଶାଖେଳରେ ବ୍ୟସ୍ତ । ମଠର ମହନ୍ତ ହୋଇ ଧର୍ମକାର୍ଯ୍ୟ କରିବାରେ ଆଦୌ ନିଷ୍ଠା ନାହିଁ । ପ୍ରଚୁର ଧନସମ୍ପତ୍ତି ଓ ଆୟ ହେଉଥିବାରୁ ସେ କାହାକୁ ପାସଙ୍ଗରେ ପକାଏ ନାହିଁ ।''

ରାଜା ସବୁ କଥା ସହ୍ୟ କରିବେ; ମାତ୍ର ତାଙ୍କର ଜଣେ ପ୍ରଜା ତାଙ୍କୁ ଖାତିର କରୁନାହିଁ ଜାଣିଲେ ସେ କ୍ଷମା ଦେଇପାରିବେ ନାହିଁ । ମନେ ମନେ ବିଚାରିଲେ, ମହନ୍ତ ଭୋଳାନାଥଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ହେବ ।

ସେ ନିଜର ଅନୁଚର ଦ୍ୱାରା ମହନ୍ତଙ୍କୁ ଡକାଇ ପଠାଇଲେ । ପ୍ରକୃତରେ ଭୋଳାନାଥଙ୍କ ମଠ ସହର ବାହାରେ କହିଲେ ଚଳେ । ରାଜା ଆସିବାର ଖବର ତାଙ୍କ ପାଖରେ ପହଞ୍ଚି ନଥିଲା । ରାଜାଙ୍କ ସନ୍ଦେଶ ପାଇ ଭୋଳାନାଥ ରାଜାଙ୍କ ପାଇଁ କିଛି ଉପହାର ଧରି ତୁରନ୍ତ ସାକ୍ଷାତ କଲେ । ରାଜାଙ୍କୁ ନିଜର ସମ୍ମାନ ଜଣାଇଲେ । ତାଙ୍କ ବିରୋଧରେ ଯେ ଏକ ଚକ୍ରାନ୍ତ ଚାଲିଛି, ସେହି କଥା ତାଙ୍କ କାନକୁ ଅବା କିପରି ଯିବ ?

ରାଜା ପଚାରିଲେ, ''ମହନ୍ତ ମହାରାଜ ! ଆପଣଙ୍କୁ ଲୋକେ ଖାମଖିଆଲି ଏବଂ ଭୋଳାଲୋକ ବୋଲି କାହିଁକି କହନ୍ତି ?''

ମହନ୍ତ କହିଲେ, ''ମହାରାଜ ! ଈଶ୍ୱରଙ୍କ କୃପାରୁ ଆମ ମଠର ପ୍ରଚୁର ଆୟ । ମୋର କୌଣସି ଅଭାବ ନାହିଁ । ମଠରେ ବହୁତ ସେବକ ଅଛନ୍ତି ସେବା କରିବା ପାଇଁ । ମୋର ଆଉ କେଉଁଥିପାଇଁ ଚିନ୍ତା ହେବ ?''

ରାଜା ପଚାରିଲେ, ''ଆପଣ ଠାକୁରଙ୍କ ସେବା ପୂଜାରେ ସମୟ ଦିଅନ୍ତି ନାହିଁ କି ?''

ମହନ୍ତ କହିଲେ, ''ଠାକୁର ସେବାପାଇଁ ସେବକମାନେ ଅଛନ୍ତି । ମୋର କାମ ହେଲା ତିନି ଧୂପରେ ଠାକୁରଙ୍କୁ ପ୍ରାର୍ଥନା କରିବା । ସେଥିରେ ଅବଶ୍ୟ କିଛି ସମୟ ଯାଏ ।''

ରାଜା କହିଲେ, ''ତାହାହେଲେ ଆପଣଙ୍କ ହାତରେ ବହୁତ ସମୟ ବଳୁଛି । ଆପଣ ମୋ ପାଇଁ ଗୋଟିଏ କାର୍ଯ୍ୟ କରିଦେଲେ ସୁଖୀ ହେବି ।''

ମହନ୍ତ କହିଲେ, ''ମଣିମା ! ମୋତେ ଆଦେଶ କରନ୍ତୁ । ଆପଣଙ୍କ ଆଦେଶ ପାଳନ କରିବା ମୋର ପ୍ରଥମ କର୍ତ୍ତବ୍ୟ ।''

ରାଜା କହିଲେ, ''ଅବଶ୍ୟ କାମଟି ସେପରି କଠିନ ନୁହେଁ । ଆକାଶରେ କେତୋଟି ତାରା ଅଛନ୍ତି, ମୋର ଜାଣିବା ପାଇଁ ଆଗ୍ରହ ହେଉଛି । ତୁମକୁ ତିନୋଟି ଦିନ ସମୟ ଦେଲି । ଠିକ୍ ଠିକ୍ ଗଣିକରି କହିବ । ତା' ନ ହେଲେ ତୁମର ମୁଣ୍ଡକାଟ ହେବ ।''

ଏକଥା ଶୁଣି ମହନ୍ତଙ୍କ ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗିଲା । ମନ ଦୁଃଖରେ ସେ ମଠକୁ ଫେରିଆସିଲେ । ତାଙ୍କୁ ଚାରିଆଡ଼େ ଅନ୍ଧାର ଦେଖାଗଲା । ଖାଇବା ଶୋଇବାରେ ମନ ରହିଲା ନାହିଁ । ରାତିର ଅନ୍ଧକାରରେ ଜଗି ବସିଲେ । ତାରାମାନଙ୍କୁ ଗଣି ଗଣି କ୍ଳାନ୍ତ ହୋଇପଡ଼ନ୍ତି । ଗଣିବା ସରେ ନାହିଁ । ପହରକୁ ପହର କେତେ ତାରା ବୁଡ଼ି ଯାଉଥାନ୍ତି, ପୁଣି କେତେ ନୂଆ ତାରାଙ୍କର ଉଦୟ ହେଉଥାଏ । ଏହା ଏକ ବିରାଟ ସମସ୍ୟା । କିପରି ଅବା ସେ ତାରାମାନଙ୍କୁ ଗଣିପାରିବେ ? ଗଣି ନ ପାରିଲେ ତାଙ୍କର ମୁଣ୍ଡ ରହିବ ନାହିଁ । ମୃତ୍ୟୁ ଚିନ୍ତାରେ ସେ ବିଚଳିତ ହୋଇ ପଡୁଥାଆନ୍ତି । ଯେଉଁମାନଙ୍କ ସହିତ ପଶା ଖେଳୁଥିଲେ, ସେମାନଙ୍କୁ ବିଦା କରିଦେଲେ । ମଠରେ ଏତେ ସେବକ ଥିଲେ, କେହି ଭୟରେ ପାଖ ପଶନ୍ତି ନାହିଁ । ଖାଇବା ପିଇବା ସେ ଭୁଲିଗଲେ ।

ମଠର ସେବକମାନେ ପରସ୍ପର କଥା ହେଉଥାଆନ୍ତି । ମହନ୍ତଙ୍କର ଏପରି କାହିଁକି ହେଲା ? କେଡ଼େ ମନ ଖୁସିର ଲୋକ । ରାଜାଙ୍କ ପାଖରୁ ଆସିଲା ପରଠାରୁ ସେ ଏକ ଭିନ୍ନ ମଣିଷ ପାଲଟି ଯାଇଛନ୍ତି । ଠାକୁର ମନ୍ଦିରକୁ ମଧ୍ୟ ପ୍ରାର୍ଥନା କରିବାକୁ ଆଉ ଯାଉନାହାନ୍ତି ।

ମହନ୍ତ ଭୋଳାନାଥ ମୃତ୍ୟୁ ଚିନ୍ତାରେ ଅସ୍ଥିର । ଦୁଇଟି ରାତି ପାହିଗଲାଣି । ଆଜି ଶେଷ ରାତି । ଆଖିରେ ପତା ପଡୁନାହିଁ । ଆକାଶକୁ ଚାହିଁ ଚାହିଁ ଲୁହ ଝରାଉଥାଆନ୍ତି । ରାତି ପାହିଲେ ତାଙ୍କର ସମସ୍ତ ଲୀଳାଖେଳା ସରିଯିବ । ଆକାଶର ତାରାଙ୍କୁ ଅବା ସେ କିପରି ଗଣି କହିଦେଇ ପାରିବେ ? ରାଜାଙ୍କର ଖିଆଲି ମନକୁ ଅବା କି ଉତ୍ତର ଅଛି ?

ମଠରେ ଜଣେ ବୁଢ଼ା ସେବକ ଥିଲେ । ସେ ଭୋଳାନାଥଙ୍କୁ ପିଲାବେଳୁ ସେବା କରି ଆସୁଛନ୍ତି । ସେ ସାହସ ସଞ୍ଚୟ କରି ମହନ୍ତଙ୍କ ପାଖରେ ପହଞ୍ଚିଲେ । ଆଦର କରି ପଚାରିଲେ, ''ମହନ୍ତ ମହାରାଜ ! ଆପଣ କିଛି କଥା କହୁନାହାନ୍ତି । ଆମ୍ଭମାନଙ୍କୁ ସେବା କରିବାର ସୁଯୋଗ ମିଳୁନାହିଁ । ଆମର ଅପରାଧ କଅଣ, ବୁଝିପାରୁ ନାହୁଁ ।''

ଭୋଳାନାଥ କହିଲେ, ''ତୁମର କିଛି ଦୋଷ ନାହିଁ । ସବୁ ମୋର ଭାଗ୍ୟର ଲେଖା । ରାଜା ମୋତେ ଆକାଶର ତାରା ଗଣି କାଲି ସକାଳୁ କହିବା ପାଇଁ କହିଛନ୍ତି । ନଚେତ୍ ମୁଣ୍ଡକାଟ ହେବ । ରାତି ପାହିଲେ ମୋର ମୃତ୍ୟୁ ସୁନିଶ୍ଚିତ ।''

ଏତିକି କହି ସେ ଦୁଃଖରେ କାନ୍ଦିବାକୁ ଲାଗିଲେ । ବୃଦ୍ଧ ସେବକ ଭୋଳାନାଥଙ୍କୁ ବୁଝାଇ କହିଲେ, ''ଆପଣ ଦୟାକରି ଭୋଜନ ଓ ବିଶ୍ରାମ କରନ୍ତୁ । କାଲି ସକାଳୁ ଆପଣଙ୍କ ସମସ୍ୟାର ମୁଁ ସମାଧାନ କରିଦେବି । ଆପଣ ମୋ ଉପରେ ବିଶ୍ୱାସ ରଖନ୍ତୁ । ଆଗରୁ କହିଥିଲେ ଆପଣ ଏତେ ଦୁଃଖ ପାଇ ନ ଥାନ୍ତେ ।''

ମହନ୍ତ ମହାରାଜଙ୍କ ମନ ତ ବୁଝିଲା ନାହିଁ; ତଥାପି ବୃଦ୍ଧ ସେବକଙ୍କର କଥା ମାନି ବିଶ୍ରାମ କରିବାକୁ ଗଲେ ।

ସକାଳ ହେଲା । ମହନ୍ତ ଭୋଳାନାଥ ପ୍ରସ୍ତୁତ ହେଉଥାଆନ୍ତି ରାଜାଙ୍କ ପାଖକୁ ଯିବା ପାଇଁ । ମନରେ ନାନା ଆଶଙ୍କା । ସତରେ କ'ଣ ବୃଦ୍ଧ ସେବକ ତାଙ୍କୁ ସାହାଯ୍ୟ କରିପାରିବେ ?

ଏତିକିବେଳେ ଗୋଟିଏ ବଡ଼ ମୃଗଛାଲ ଧରି ବୃଦ୍ଧସେବକ ଯାଇ ଭୋଳାନାଥଙ୍କ ପାଖରେ ପହଞ୍ଚିଲେ । ଛାଲଟିର ମୁଣ୍ଡ ଅଂଶ କଟାଯାଇଥିଲା ।

ଛାଲକୁ ଦେଖି ମହନ୍ତ ପଚାରିଲେ, ''ଏଇଟି କ'ଣ ହେବ ?'' ବୃଦ୍ଧ କହିଲେ, ''ଏଇ ଛାଲଟି ହେଉଛି ରାଜାଙ୍କର ପ୍ରଶ୍ନର ଉତ୍ତର । ଆକାଶର ତାରା କ'ଣ କେହି ଗଣିପାରିଛି ? ରାଜାଙ୍କର ଖିଆଲି ପ୍ରଶ୍ନର ଉତ୍ତର ଦେବାକୁ ହେବ । ଏହି ଛାଲରେ ଯେତେ ଲୋମ ଅଛି, ଆକାଶରେ ସେତିକି ତାରା । ଛାଲରେ ଥିବା ଅଧିକା ଲୋମତକ ମୁଣ୍ଡଆଡୁ କାଟି ଦିଆଯାଇଛି । ରାଜାଙ୍କର ସନ୍ଦେହ ହେଲେ ସେ ଅନ୍ୟଦ୍ୱାରା ତାରାମାନଙ୍କୁ ଗଣିସାରି ଛାଲର ଲୋମତକ ମିଳାଇ ଦେଇପାରନ୍ତି ।''

ତିନିଦିନ ପରେ ମହନ୍ତ ଭୋଳାନାଥଙ୍କ ମନରେ ପ୍ରଥମ ଥର ପାଇଁ ହସ ଉକୁଟି ଉଠିଲା । ତାଙ୍କର ବୃଦ୍ଧ ସେବକ ଏତେ ସହଜରେ ଏଡ଼େ ବଡ଼ ସମସ୍ୟାର ସମାଧାନ କରିଦେଇଥିବାରୁ ତାଙ୍କୁ ଧନ୍ୟବାଦ ଜଣାଇଲେ ।

ଘୋଡ଼ାଗାଡ଼ିରେ ବସି ମହନ୍ତ ଭୋଳାନାଥ ରାଜାଙ୍କର ବଙ୍ଗଳା ଦୁଆରେ ଯାଇ ପହଞ୍ଚିଲେ । ରାଜା ଅପେକ୍ଷା କରିଥାଆନ୍ତି । ଯେଉଁମାନେ ଭୋଳାନାଥଙ୍କ ବିରୋଧରେ ରାଜାଙ୍କ ଆଗରେ ଚୁଗୁଲି କରିଥିଲେ, ସେମାନେ ମଧ ଅପେକ୍ଷା କରିଥାନ୍ତି । ମହନ୍ତ ଭୋଳାନାଥର ଯେ ମୁଣ୍ଡକାଟ ହେବ, ଏହି ବିଷୟରେ କାହାରି ସନ୍ଦେହ ନ ଥାଏ ।

ରାଜାଙ୍କୁ ସମ୍ମାନ ଜଣାଇ ମହନ୍ତ ଭୋଳାନାଥ ଆସନ ଗ୍ରହଣ କଲେ । ରାଜା ପଚାରିଲେ, ''ମୋର ପ୍ରଶ୍ନର ସଠିକ୍ ଉତ୍ତର ପାଇଲ ତ ?''

ମହନ୍ତ ସଙ୍ଗେ ସଙ୍ଗେ ରାଜାଙ୍କ ହାତକୁ ମୃଗ ଛାଲଟି ବଢ଼ାଇଦେଲେ । ରାଜା କିଛି ବୁଝିପାରିଲେ ନାହିଁ । ଛାଲଯାକ ଲୋମ ଭର୍ତ୍ତି ହୋଇଛି । ଛାଲର ମୁଣ୍ଡପାଖଟି ନାହିଁ । ''ଏ ଛାଲ କାହିଁକି ?''—ରାଜାଙ୍କର ପ୍ରଶ୍ନ ଥିଲା ଭୋଳାନାଥଙ୍କୁ ।

ମହନ୍ତ ଭୋଳାନାଥ କହିଲେ, ''ମଣିମା, ଗତ ତିନିରାତି ହେଲା ମୁଁ ଖାଲି ତାରା ଗଣିବା କାମରେ ଲାଗିଛି । ମୁହୂର୍ତ୍ତକ ପାଇଁ ମଧ୍ୟ ଆଖିରେ ପଲକ ପଡ଼ିନାହିଁ । ଦେଖିଲି, ତାରାମାନଙ୍କୁ ଗଣିକରି ସଂଖ୍ୟାରେ ଲେଖି ରଖିବା ଅସମ୍ଭବ ବ୍ୟାପାର । ତେଣୁ ଏହି ମୃଗଛାଲର ଲୋମ ସହିତ ତାରାମାନଙ୍କର ସଂଖ୍ୟା ମିଳାଇ ରଖିଲି । ଗୋଟିଏ ତାରା ଗଣେ, ଗୋଟିଏ ଲୋମ ସହିତ ମିଳାଇ ରଖେ । ଏମିତି ତାରା ଗଣିବା କାମ ସରିଗଲା । ମୃଗଛାଲରୁ ଯେତିକି ଲୋମ ବଳିଗଲା, ସେତକ କାଟି ଅଲଗା କରିଦେଲି । ଆପଣଙ୍କର ଯଦି ସନ୍ଦେହ ହେଉଛି, ତେବେ କାହାଦ୍ୱାରା ଗଣାଇ ଲୋମ ସହିତ ମିଳାଇ ନିଅନ୍ତୁ ।''

ରାଜା ଥିଲେ ବୁଦ୍ଧିମାନ ଓ ବିବେକୀ । ତୋଷାମୋଦିଆଙ୍କ କଥାରେ ସେ ବିଭ୍ରାନ୍ତ ହୋଇଥିଲେ । ମନେ ମନେ ହସିଲେ, ଏପରି ଏକ ପ୍ରଶ୍ନର ଉତ୍ତର ଖୋଜୁଥିଲେ ବୋଲି । ସେ ଅନୁଭବ କଲେ ଯେ, କିଛି ଲୋକ ଈର୍ଷାପରାୟଣ ହୋଇ ମହନ୍ତଙ୍କ ବିରୋଧରେ ଅଭିଯୋଗ କରିଛନ୍ତି । ରାଜା ଏଥର ମହନ୍ତ ଭୋଳାନାଥଙ୍କୁ ଭଲପାଇ ବସିଲେ । ସେହିଦିନୁ ରାଜା ଓ ଭୋଳାନାଥ ପରସ୍ପରର ବନ୍ଧୁ ହେଲେ । ରାଜା ବହୁତ ଉପହାର ଦେଇ ଭୋଳାନାଥଙ୍କୁ ବିଦାୟ ଦେଲେ ।

ବୃଦ୍ଧ ସେବକ ତାଙ୍କର ଜୀବନ ରକ୍ଷା କରିଥିବାରୁ ଭୋଳାନାଥ ତାଙ୍କୁ ବହୁତ ପ୍ରଶଂସା କଲେ ଓ ଉପହାର ଦେଲେ । ଭୋଳାନାଥ ମଧ୍ୟ ଅନୁଭବ କଲେ ଯେ, ସେ ମହନ୍ତ ଆସନରେ ବସି ବିଳାସୀ ହେବା ଉଚିତ ନୁହେଁ । ଏଣିକି ତାଙ୍କର ସମୟ ବିତିଲା ଠାକୁର ପୂଜା, ଶାସ୍ତ୍ର ଅଧ୍ୟୟନ ଏବଂ ଦରିଦ୍ରମାନଙ୍କର ସେବାରେ ।



# ବୋଦା କାନ୍ଦିଲା କାହିଁକି ?



ଆମର ଭାରତବର୍ଷ ଏକ ବିଶାଳ ଦେଶ । ଏହାର ସଭ୍ୟତା ଓ ସଂସ୍କୃତି ଅତି ପ୍ରାଚୀନ । ଏହି ପବିତ୍ର ଦେଶରେ ବହୁକାଳ ପର୍ଯ୍ୟନ୍ତ ଧର୍ମର ଅନୁଶାସନ କଠୋର ଭାବରେ ଚଳି ଆସିଥିଲା । ଏ ଦେଶରେ ଅସଂଖ୍ୟ ଧର୍ମବିଶ୍ୱାସ ଓ ଦେବଦେବୀ । ଧର୍ମର ଚଳଣି ଓ ବିଶ୍ୱାସ ହିନ୍ଦୁ ସମାଜକୁ ବହୁକାଳ ଯାବତ ବାନ୍ଧି ରଖିଥିଲା । ଧର୍ମ ନାମରେ ଏହି ଦେଶରେ କେତେ ସଂଘର୍ଷ, ରକ୍ତପାତ ଓ ଅତ୍ୟାଚାର ଚାଲି ଆସିଅଛି । କୌଣସି ଧାର୍ମିକ ଅନୁଷ୍ଠାନ ବିରୋଧରେ ଚିନ୍ତା କରିବା ମଧ ପାପ ବୋଲି ବିଶ୍ୱାସ କରାଯାଉଥିଲା । ଏପରି ସମୟ ଥିଲା, ଯେତେବେଳେ ବଣଜଙ୍ଗଲର ଆଦିବାସୀମାନେ ଭଲ ଫସଲ ଆମଦାନୀ ପାଇଁ ଇଷ୍ଟଦେବୀଙ୍କ ପାଖରେ ମଣିଷ ଓ ମଇଁଷି ବଳି ଦେଉଥିଲେ । ତନ୍ତ୍ରସାଧକମାନେ ନିଜର ଅଭିଳାଷ ପୂରଣ ପାଇଁ ଦେବୀଙ୍କ ସମ୍ମୁଖରେ ମନୁଷ୍ୟକୁ ହତ୍ୟା କରୁଥିଲେ । ପ୍ରାଚୀନ ହିନ୍ଦୁ ସମାଜରେ ବହୁ ପ୍ରକାର ଯଜ୍ଞ କରାଯାଉଥିଲା । ଯଜ୍ଞଶେଷରେ ଅସଂଖ୍ୟ ପଶୁ ବଳି ପଡୁଥିଲେ ବୋଲି ପୁରାଣମାନଙ୍କରେ କୁହାଯାଇଛି । ଜୀବଜନ୍ତୁକୁ ହତ୍ୟା କରିବା ଯେ ମହାପାପ, ଏ କଥାଟି ସେମାନେ ଅନୁଭବ କରିପାରୁ ନଥିଲେ ।

ସେହି କାଳରେ ଗୋଟିଏ ବ୍ରାହ୍ମଣ ଶାସନରେ ଜଣେ ବେଦଜ୍ଞ ବ୍ରାହ୍ମଣ ଥିଲେ । ସେ ଥିଲେ ପରମ ବିଦ୍ୱାନ୍ । ନାନା ଶାସ୍ତ୍ରପୁରାଣରେ ତାଙ୍କର ଦକ୍ଷତା ଥିଲା । ତାଙ୍କ ପ୍ରତିଷ୍ଠିତ ସଂସ୍କୃତ ପାଠଶାଳାକୁ ବହୁ ଶିଷ୍ୟ ଆସୁଥିଲେ ଜ୍ଞାନ ଅର୍ଜନ କରିବା ପାଇଁ । ଦେଶ ବିଦେଶର ଧନୀ ଜମିଦାରଗଣ ଏହି ପଣ୍ଡିତ ବ୍ରାହ୍ମଣଙ୍କୁ ଅତ୍ୟନ୍ତ ସମ୍ମାନ କରୁଥିଲେ ଏବଂ ଆବଶ୍ୟକ ହେଲେ ତାଙ୍କର ପରାମର୍ଶ ଲୋଡୁଥିଲେ ।

ପଣ୍ଡିତ ବ୍ରାହ୍ମଣ ଥିଲେ ଅତ୍ୟନ୍ତ ନିଷ୍ଠାପର । ନାନା ଦେବଦେବୀ ପୂଜା ନ କଲେ ସେ ଆଦୌ ଜଳଗ୍ରହଣ କରୁ ନ ଥିଲେ । ପାଠଶାଳାର ଶିଷ୍ୟଗଣ ମନ ଜାଣି ଗୁରୁଙ୍କର ସେବା କରୁଥିଲେ । ବ୍ରାହ୍ମଣ ପଣ୍ଡିତ ଥିଲେ ଦେବୀଙ୍କର ଭକ୍ତ । ବର୍ଷତମାମ ଘରେ ଠାକୁରାଣୀଙ୍କର ନାନା ପର୍ବ ଓ ପୂଜା ଅନୁଷ୍ଠାନ ଲାଗି ରହିଥାଏ । ବହୁପ୍ରକାର ଭୋଗର ଆୟୋଜନ କରାଯାଏ । ଶିଷ୍ୟଗଣ ଏହି ମହୋତ୍ସବର ସଫଳତା ପାଇଁ ସର୍ବଦା ଲାଗି ପଡ଼ିଥାଆନ୍ତି ।

ବ୍ରାହ୍ମଣଙ୍କର ପିତୃଶ୍ରାଦ୍ଧ ମହା ଆଡ଼ମ୍ବରରେ ପାଳିତ ହୁଏ । ବ୍ରାହ୍ମଣ ଶାସନର ପ୍ରତ୍ୟେକ ଘରୁ ନିମନ୍ତ୍ରିତ ହୋଇ ଲୋକମାନେ ଭୋଜିରେ ଅଂଶଗ୍ରହଣ କରନ୍ତି । ଶ୍ରାଦ୍ଧ ଶେଷରେ ହୋମ କରାଯିବା ସହିତ ପ୍ରତ୍ୟେକ ବର୍ଷ ଗୋଟିଏ ବୋଦା ବଳି ପଡ଼େ ଏବଂ ତାହାର ମାଂସ ରନ୍ଧନ କରାଯାଇ ଗ୍ରାମବାସୀଙ୍କୁ ଖାଇବାକୁ ଦିଆଯାଏ । ଭୋଜିରେ ମାଂସ ତରକାରୀ ଖାଇ ସମସ୍ତେ ଆନନ୍ଦିତ ହୁଅନ୍ତି । ତେଣୁ ପ୍ରତ୍ୟେକ ବର୍ଷ ଶ୍ରାଦ୍ଧବେଳକୁ ଭଲ ବୋଦାଟିଏ ଯୋଗାଡ଼ କରିବା ପାଇଁ ଶିଷ୍ୟମାନେ ଲାଗିପଡ଼ନ୍ତି ।

ସେହି ବର୍ଷ ଗୁରୁଙ୍କର ପିତୃଶ୍ରାଦ୍ଧ ପାଖେଇ ଆସିଲା । ଶ୍ରାଦ୍ଧ ପାଇଁ ନାନା ସରଞ୍ଜାମ ଲୋଡ଼ା । ଶିଷ୍ୟମାନେ ସେସବୁ ଯୋଗାଡ଼ କରିବାରେ ଲାଗିପଡ଼ିଲେ । ଶ୍ରାଦ୍ଧର ଅସଲ ଆକର୍ଷଣ ହେଲା ବୋଦା ବଳିପଡ଼ିବା । ଶିଷ୍ୟ କେତେଜଣ ବିଭିନ୍ନ ଗାଁ ବୁଲି ଭଲ ବୋଦାଟିଏ କିଣି ଆଣିଲେ । ବୋଦାକୁ ଦେଖି ସମସ୍ତଙ୍କର ପାଟିରୁ ଲାଳ ଗଡ଼ି ପଡୁଥାଏ । ଯାହାହେଉ, ଏଥର ଭଲ ଭୋଜିଟିଏ ହେବ ।

ଶ୍ରାଦ୍ଧ ଦିନର କଥା । ପୁରୋହିତ ବରଣ ହୋଇ ଆସିଲେ । ଉପଯୁକ୍ତ ବିଧି ଅନୁସାରେ ଶ୍ରାଦ୍ଧ ଦିଆହେଲା । ହୋମରେ ଘିଅ ଆହୁତି ସରିଲା । ଏଣିକି ବଳି ପଡ଼ିବା କଥା । ପୁରୋହିତ ଆଦେଶ ଦେଲେ—''ତୁରନ୍ତ ବୋଦାକୁ ଗାଧୋଇ ନେଇଆସ ।'' ଶିଷ୍ୟମାନେ ପୂର୍ଣ୍ଣ ଉତ୍ସାହରେ ବୋଦାକୁ ନେଇଗଲେ ପୋଖରୀ କୂଳକୁ । ସମସ୍ତେ ମିଳିମିଶି ତାକୁ ଗାଧୋଇ ଦେଉଥାଆନ୍ତି । ଏହି ସମୟରେ ବୋଦା ଖୁବ୍ ଜୋରରେ ହସିଲା ଏବଂ ପରେ କାନ୍ଦିବାକୁ ଲାଗିଲା ।

ଏ ତ ବଡ଼ ଅଜବ କଥା । ବୋଦା କେଉଁଠି ହସିବାର କିମ୍ବା କାନ୍ଦିବାର ଦେଖା ନ ଥିଲା । ଶିଷ୍ୟମାନେ ପ୍ରଥମେ ବିଚଳିତ ହୋଇପଡ଼ିଲେ । ଜଣେ ଶିଷ୍ୟ ତାକୁ ପଚାରିଲା, ''ଏହା କିପରି କଥା ! ତୁ ପ୍ରଥମେ ହସିଲୁ, ତା'ପରେ କାନ୍ଦିଲୁ କାହିଁକି ?''

ବୋଦାଟି ଅବିକଳ ମଣିଷ ପରି ଉତ୍ତର ଦେଲା, ''ପିଲାମାନେ, ତୁମେ ମୋତେ ଗୁରୁଙ୍କ ପାଖକୁ ନେଇଚାଲ, ସେହିଠାରେ ଏହାର କାରଣ କହିବି ।''

ପିଲାମାନେ ବୋଦାକୁ ଧରି ଗୁରୁଙ୍କ ଘରକୁ ଚାଲିଲେ । ମନରେ ଆଉ କାହାରି ସରାଗ ନ ଥାଏ । ଏହା ବଡ଼ ଅଦ୍ଭୁତ କଥା । ବୋଦା କିପରି ମଣିଷ ପରି କଥା କହୁଛି !!

ପୁରୋହିତେ ତରତର ହେଉଥାଆନ୍ତି । ବୋଦା ପହଞ୍ଚିଲା ମାତ୍ରକେ ସେ ତା' ମୁଣ୍ଡରେ ସିନ୍ଦୂର ଲଗାଇଦେଲେ । ବେକରେ ପକାଇଲେ ମନ୍ଦାର ମାଳଟିଏ । ପୂଜା ସରିଲେ ବଳିପଡ଼ିବା କଥା । ବୋଦାକୁ ନେଇ ବଳି ଖମ୍ବରେ ବାନ୍ଧି ଦିଆଗଲା ।

ପିଲାଙ୍କର ତ ମନ ଲାଗିଛି । ସେମାନେ ଗୁରୁଙ୍କୁ ଯାଇ ସବୁ କଥା କହିଲେ । ଗୁରୁ ପ୍ରଥମେ ବିଶ୍ୱାସ କରିପାରିଲେ ନାହିଁ । ବୋଦାଟା ମଣିଷ ପରି କଥା କହିବ, ଏହା କ'ଣ କେବେ ସମ୍ଭବ ? ପିଲାଙ୍କ କଥାରେ ଗୁରୁ ଆସିଲେ ବଳି ଖମ୍ବ ପାଖକୁ । ବୋଦାର ଆଖିରୁ ପ୍ରକୃତରେ ଲୁହ ଝରୁଥାଏ ।

ଗୁରୁଙ୍କୁ ଦେଖି ସେ ହସିବାକୁ ଲାଗିଲା ଏବଂ ତା'ପରେ କାନ୍ଦିଲା । ଗୁରୁ ଆଉ ପୁରୋହିତେ ଦୁହେଁ ଚମକି ପଡ଼ିଲେ । ଏ ତ ବଡ଼ ଅଦ୍ଭୁତ କଥା ! ଦିନେ କାଳେ ଶୁଣା ନାହିଁ । ବୋଦାଟା ମଣିଷ ପରି ହସୁଛି, କାନ୍ଦୁଛି ଏବଂ କଥା କହୁଛି !

ଗୁରୁ ପଚାରିଲେ, ''ତୁମେ ଏପରି ହସିବାର ଏବଂ କାନ୍ଦିବାର କାରଣ କ'ଣ ? ବଳି ପକାଇବା ଆମର ବିଧି । କେଉଁକାଳୁ ଚଳି ଆସୁଛି । ବହୁତ ଠାକୁରାଣୀ ମନ୍ଦିରରେ, ଯଜ୍ଞ ସ୍ଥାନରେ ବଳି ପଡ଼ିଥାଏ । ଏହାର ରହସ୍ୟ ଖୋଲି କରି କହ ?''

ବୋଦା କହିଲା, ''ହେ ବ୍ରାହ୍ମଣ ! ମୁଁ ମଧ୍ୟ ତୁମ ପରି ପୂର୍ବଜନ୍ମରେ ନୈଷ୍ଠିକ ବ୍ରାହ୍ମଣ ଥିଲି । ନାନା ବ୍ରତ, ଯଜ୍ଞ, ପୂଜା ଅନୁଷ୍ଠାନରେ ଦିନ ଯାଉଥିଲା । ପ୍ରତିବର୍ଷ ପିତୃଶ୍ରାଦ୍ଧରେ ବୋଦା ବଳି ପକାଉଥିଲି । ସେହି ପାପର ପରିଣାମରେ ମୋତେ ବୋଦା ଜନ୍ମ ମିଳିଲା । ମୁଁ ଚାରିଶହ ଅନେଶତ ଥର ବୋଦା ହୋଇ ଜନ୍ମ ହୋଇଛି ଏବଂ ପ୍ରତ୍ୟେକ ଥର ହଣା ଖାଇଛି । ଏହି ଥର ମୋର ଶେଷ ପାଳି । ତୁମେ ମୋତେ ବଳି ଦେଲେ ମୁଁ ପଶୁ ଜନ୍ମରୁ ଉଦ୍ଧାର ପାଇବି । ଏଇଥିପାଇଁ ମୁଁ ହସୁଥିଲି । ଯାହାହେଉ, ଆଉ ଥରେ ମୋତେ ପଶୁଜନ୍ମ ଗ୍ରହଣ କରି ହଣା ହେବାକୁ ପଡ଼ିବ ନାହିଁ ।''

ବ୍ରାହ୍ମଣ ପଚାରିଲେ, ''ଏଥର ବୁଝିଲି, ତୁମେ କାହିଁକି ପ୍ରଥମେ ହସିଲ । କିନ୍ତୁ କାନ୍ଦିବାର କାରଣ କ'ଣ ?''

ବୋଦା କହିଲା, ''ହେ ବ୍ରାହ୍ମଣ, ତୁମରି କଥା ଭାବିକରି ମୁଁ କାନ୍ଦୁଥିଲି । ପାପ ତ କରିଥିଲି । ପାଞ୍ଚଶହ ଥର ଜନ୍ମହୋଇ ହଣାହେବାର କଷ୍ଟ ଅଙ୍ଗେ ନିଭେଇଛି । ଏବେ ତୁମର ସେଇ ପାଳି ପଡ଼ିବ । ତୁମେ ଯେଉଁ ପାପ କରୁଛ, ଏଥିରୁ ତୁମକୁ ଉଦ୍ଧାର ପାଇବାର ଉପାୟ ନାହିଁ ।''

ବ୍ରାହ୍ମଣ ଏବଂ ପୁରୋହିତ, ଦୁହେଁ ଭୟରେ ଥରିବାକୁ ଲାଗିଲେ । ଦୁହେଁ ବିଚାର କରି ଠିକ୍ କଲେ, ''ବାସ୍ତବିକ୍ ପଶୁହତ୍ୟା ଅତ୍ୟନ୍ତ ନିଷ୍ଠୁର ପ୍ରଥା । ଏହି ପାପର ପରିଣତି ଅତ୍ୟନ୍ତ ଭୟଙ୍କର । ଆଜିଠାରୁ ଶ୍ରାଦ୍ଧରେ କିମ୍ବା ଠାକୁରାଣୀଙ୍କ ପାଖରେ ପଶୁବଳି ବନ୍ଦ କରାଯିବ ।''

ସେ ଶିଷ୍ୟମାନଙ୍କୁ କହିଲେ, ''ପିଲାମାନେ, ବୋଦାର ବନ୍ଧନ ଖୋଲିଦିଅ । ତାକୁ ଭଲ ଭାବରେ ଖାଇବାକୁ ଦେଇ ତାର ମାଲିକ ପାଖରେ ଛାଡ଼ି ଦେଇଆସ ।''

ବୋଦାଟି ମୁକୁଳି ସାରିଲା ପରେ ବ୍ରାହ୍ମଣଙ୍କୁ ମୁଣ୍ଡ ନୁଆଁଇ ନମସ୍କାର କଲା, କହିଲା—''ତୁମେ ମୋତେ ଏହିଥର ବଳି ନ ପକାଇଲେ ମଧ୍ୟ ମୁଁ ମୁକ୍ତି ପାଇବି ।''

ଏତିକି କହୁ କହୁ ହଠାତ୍ ଏକ ବିଜୁଳି ମାରିଲା ଏବଂ ସେହି ଆଘାତରେ ବୋଦାଟି ମରିଯାଇ ପଶୁଜନ୍ମରୁ ଉଦ୍ଧାର ପାଇଲା ।

ସେହିଦିନୁ ସମସ୍ତେ ସାବଧାନ ହେଲେ । ଜୀବ ହତ୍ୟା ମହାପାପ । ଧର୍ମ ନାମରେ ଜୀବହତ୍ୟା କଲେ ମଣିଷ ନରକରେ ଘାଣ୍ଟି ହୋଇ କଷ୍ଟ ପାଇବ । ତାକୁ କେହି ଉଦ୍ଧାର କରିପାରିବେ ନାହିଁ ।



# ସାହସୀ ରାଜା



ପ୍ରାଚୀନ କାଳର କଥା । ବୈରୀଗଞ୍ଜନ ମାନଧାତା ନାମରେ ଜଣେ ରାଜା ରାଜୁତି କରୁଥିଲେ । ସେ ଥିଲେ ଦେଖିବାକୁ ଭାରୀ ସୁନ୍ଦର । ଚାଲିଗଲା ଲୋକ ରାଜାଙ୍କୁ ଘଡ଼ିଏ ଠିଆ ହୋଇ ଚାହିଁ ରହୁଥିଲା । ରାଜାଙ୍କର ରୂପ ଯେମିତି, ଗୁଣ ବି ସେମିତି । ରାଇଜର ଲୋକେ ତାଙ୍କ ଶାସନରେ ବେଶ୍ ସୁଖରେ ଥାଆନ୍ତି । ତାଙ୍କର କରାମତି ଯୋଗୁ ଆଖପାଖର ପଡ଼ୋଶୀ ରାଜାମାନେ ଥରହର ହେଉଥାଆନ୍ତି । କୌଣସି ରାଜା ବୈରୀଗଞ୍ଜନଙ୍କ ସହିତ ଶତ୍ରୁତା କରିବାକୁ ସାହସ କରନ୍ତି ନାହିଁ ।

ଦିନକର କଥା । ରାଜା ଶିକାର କରିବାକୁ ଯାଇ ବଣ ଭିତରେ ବାଟ ଭୁଲିଗଲେ । ଘୋଡ଼ାକୁ ଟାଣି ଟାଣି ବଣ ଭିତରେ ଗୋଟିଏ ପୋଖରୀ କୂଳରେ ପହଞ୍ଚିଲେ । ସେଇଠି ଗୋଟିଏ ଗଛ ଛାଇରେ ବସିଛନ୍ତି; ସେ ଦେଖିଲେ ସ୍ୱର୍ଗର ଜଣେ ଦେବକନ୍ୟା ସେଇ ପୋଖରୀରେ ଗାଧୋଉଛି । ତା'ପରି ସୁନ୍ଦରୀ ସେ ପୃଥିବୀରେ କେଉଁଠି ଦେଖି ନାହାନ୍ତି । ଦେବକନ୍ୟା ରାଜାଙ୍କୁ ଦେଖି ପ୍ରଥମେ ଲାଜରେ ଝାଉଁଳି ପଡ଼ିଲା । ମଣିଷମାନଙ୍କ ଭିତରେ ପୁଣି ଏଡ଼େ ସୁନ୍ଦର ପୁରୁଷ ଅଛନ୍ତି ! ସେ ଆସି ରାଜାଙ୍କ ପାଖରେ ପ୍ରସ୍ତାବ କଲା—''ହେ ବୈରୀଗଞ୍ଜନ ! ମୁଁ ହେଉଛି ସ୍ୱର୍ଗର ସୁନ୍ଦରୀ । ମୋତେ ତୁମେ ସ୍ତ୍ରୀ ଭାବରେ ଗ୍ରହଣ କର । ତୁମେ ଖୁବ୍ ସୁଖରେ ରହିବ । ତୁମର ଧନସମ୍ପତ୍ତି ଆହୁରି ବଢ଼ିଯିବ । ସଂସାରଯାକର ଧନରତ୍ନ ତୁମ ଗୋଡ଼ ତଳେ ଆସି ଠୁଳ ହୋଇପଡ଼ିବ ।''

ରାଜା ବୈରୀଗଞ୍ଜନ ଦେବକନ୍ୟାଙ୍କୁ ସମ୍ମାନ ଜଣାଇ କହିଲେ, ''ମୁଁ ତୁମ ପ୍ରସ୍ତାବରେ ରାଜି ହୋଇପାରିବି ନାହିଁ । କାହାରି ଦୟାରେ ଐଶ୍ୱର୍ଯ୍ୟ ଭୋଗ କରିବା ମୋର ଇଚ୍ଛା ନୁହେଁ । ନିଜର ଶକ୍ତିବଳରେ ସେସବୁ ମୁଁ ହାସଲ କରିବି । ତା'ଛଡ଼ା ତୁମେ ହେଉଛ ସ୍ୱର୍ଗର କନ୍ୟା । ମୁଁ ହେଉଛି ପୃଥିବୀର ମଣିଷ । କୌଣସି କାରଣରୁ ତୁମେ ବିରକ୍ତ ହେଲେ ମୋତେ ଛାଡ଼ିକରି ସ୍ୱର୍ଗକୁ ପଳାଇବ । ତେଣୁ ତୁମ ପ୍ରସ୍ତାବରେ ମୁଁ ରାଜି ହୋଇପାରିବି ନାହିଁ ।''

ଏତିକି କହି ରାଜା ନିଜ ନଅରକୁ ଫେରି ଆସିଲେ । ବାଟରେ ସୈନ୍ୟସାମନ୍ତ ତାଙ୍କୁ ପାଛୋଟି ନେଲେ ।

ଦେବକନ୍ୟା ଜଣେ ମଣିଷଠାରୁ ଏପରି ଅପମାନ ପାଇ ଖୁବ୍ ରାଗିଗଲା । ସେ ସଙ୍ଗେ ସଙ୍ଗେ ଗୋଟିଏ ମାରଣା ଷଣ୍ଢ ରୂପ ଧରି ରାଜ୍ୟରେ ଉତ୍ପାତ ଆରମ୍ଭ କରିଦେଲା । ପ୍ରଜାମାନେ ଭୟରେ ଆଉ ରାସ୍ତାକୁ ବାହାରି ପାରିଲେ ନାହିଁ । ଷଣ୍ଢର ଅତ୍ୟାଚାରରେ ଫସଲ ଉଜୁଡ଼ି ଗଲା । କେତେ ଘର ଦୁଆର ଭାଙ୍ଗିଗଲା । ରାଜା ଜାଣିପାରିଲେ ଏହା ଏକ ମାମୁଲି ଷଣ୍ଢର କାମ ନୁହେଁ । ଦେବକନ୍ୟା ମାୟା ଭିଆଣ କରି ଏପରି ଗୋଳମାଳ କରିବାରେ ଲାଗିଛି । ତାକୁ ଜବତ କରିବା ପାଇଁ ସେ ସୈନ୍ୟମାନଙ୍କୁ ତାଗିଦ କଲେ । କିନ୍ତୁ ସୈନ୍ୟମାନେ ତାକୁ ଜବତ କରିପାରିଲେ ନାହିଁ । ଶେଷକୁ ରାଜା ନିଜେ ବାହାରିଲେ । ରାଜାଙ୍କୁ ଦେଖି ଷଣ୍ଢ ଆଖିରୁ ଯେପରି ନିଆଁ ବାହାରୁଥିଲା । ସେ ଖୁବ୍ ଜୋରରେ ତାଙ୍କୁ ଭୁଷିବା ପାଇଁ ମାଡ଼ି ଆସିଲା । ରାଜା ଅଳ୍ପକେ ଘୁଞ୍ଚିଯାଇ ତାକୁ ଜବତ କରି ଶିଙ୍ଗ ଦୁଇଟି ଧରି ପକାଇଲେ । ବହୁତ ସମୟ ଲଢ଼ାଇ ପରେ ଷଣ୍ଢ ହାରିଯାଇ ପଳାଇଗଲା ।

ରାଜାଙ୍କର ସମସ୍ତେ ଜୟ ଜୟ କଲେ । ରାତିରେ ଖାଇପିଇ ରାଜା ଶୋଇଛନ୍ତି; ସେହି ଦେବକନ୍ୟା ସ୍ୱପ୍ନରେ ଆସି ହାଜର । ସେ କହିଲା, ''ମାନଧାତା ! ତୁମକୁ ମୁଁ ସହଜରେ କ୍ଷମା ଦେବିନାହିଁ । ତୁମର ଗର୍ବ ଭାଙ୍ଗିବି; କାଲି ସକାଳୁ ତୁମେ ବିରୂପ ହୋଇଯିବ । ତୁମର ଏ ସୁନ୍ଦର ଚେହେରା ଆଉ ରହିବ ନାହିଁ । ତୁମକୁ ଦେଖି ଲୋକେ ଘୃଣାରେ ଛେପ ପକାଇବେ ।''

ସକାଳୁ ରାଜାଙ୍କର ନିଦ ଭାଙ୍ଗିଗଲା । ସେ ଦେଖିଲେ, ସତକୁ ସତ ତାଙ୍କର ବିକଟାଳ ରୂପ ହୋଇଯାଇଛି । ଆଖି ପଶିଯାଇଛି । ମୁଣ୍ଡବାଳ ଫୁର୍ ଫୁର୍ । ରାକ୍ଷସ ଭଳି ଚେହେରା । ସେ ଆଉ ଘଡ଼ିଏ ନ ରହି ପାହାନ୍ତି ଅନ୍ଧାରରେ ରାଜନଅର ଛାଡ଼ି ମନ ଦୁଃଖରେ ଜଙ୍ଗଲ ଭିତରକୁ ପଳାଇଗଲେ ।

ଏଇମିତି କେତେ ବର୍ଷ ଚାଲିଗଲା । ରାଜା ମନର ବଳ ହରାଇ ନ ଥାନ୍ତି । ମରିବେ ପଛକେ ଗୋଟିଏ ଦେବକନ୍ୟାର ଶରଣ ପଶିବେ ନାହିଁ । ସେ ଜଙ୍ଗଲରେ ବୁଲୁଥାନ୍ତି । ଖରାବରଷା ଶୀତକୁ ଖାତିରି ନ ଥାଏ ।

ରାଜାଙ୍କର ଦୁଃଖ ଦେଖି ବଣ ଦେବୀଙ୍କର ଦୟା ହେଲା । ସେ ତାଙ୍କୁ ଦେଖାଦେଇ କହିଲେ, ''ବୈରୀଗଞ୍ଜନ ! ତୁମେ ଅନେକ ଦୁଃଖ ପାଇଲଣି ।'' ଏଇ ଜଙ୍ଗଲ ଆରପଟେ ଗୋଟିଏ ହ୍ରଦ ଅଛି । ସେ ହ୍ରଦର ପାଣି ସବୁବେଳେ ଫୁଟୁଛି । ତା' ଭିତରୁ କେହି ଜୀବନ ନେଇ ଫେରିନାହିଁ । ସେଇଠି ହ୍ରଦକୂଳରେ ଜଳଦେବୀଙ୍କୁ ପୂଜା କର । ସେ ସନ୍ତୁଷ୍ଟ ହେଲେ ତୁମେ ହ୍ରଦରେ ଗାଧୋଇ ପାରିବ । ତା'ହେଲେ ତୁମର ପୂର୍ବ ରୂପ ଓ ଶକ୍ତି ଫେରିଆସିବ ।''

ରାଜା ବଣଦେବୀଙ୍କୁ ଧନ୍ୟବାଦ ଜଣାଇ ସେହି ହ୍ରଦ କୂଳକୁ ଚାଲିଲେ । ସତକୁ ସତ ସେଠାରେ ପାଣି ଏତେ ଜୋରରେ ଫୁଟୁଥାଏ ଯେ ପାଖଆଖରେ କୌଣସି ଜୀବଜନ୍ତୁ ନ ଥାନ୍ତି । ହ୍ରଦର ଉପରିଭାଗରେ କୌଣସି ପକ୍ଷୀ ଉଡ଼ିବା ପାଇଁ ସାହସ କରୁ ନ ଥାନ୍ତି । ସତେଯେପରି ଗୋଟାଏ ନିଆଁର ସମୁଦ୍ର । ତଥାପି ରାଜା ସାହସ ହରାଇଲେ ନାହିଁ । ସେ ସେଠାରେ ଜଳଦେବୀଙ୍କୁ ପ୍ରାର୍ଥନା କଲେ । ସାତଦିନ କାଳ ଅଖିଆ, ଅପିଆ, ଅନିଦ୍ରା ରହି ମାନଧାତା ଜଳଦେବୀଙ୍କୁ ବିକଳରେ ଡାକିବାକୁ ଲାଗିଲେ ।

ଶେଷରେ ଜଳଦେବୀଙ୍କର ମନରେ ଦୟା ହେଲା । ସେ ପାଣି ଭିତରୁ ବାହାରି ଆସି ବୈରୀଗଞ୍ଜନକୁ କହିଲେ, ''ତୁମ ପ୍ରାର୍ଥନାରେ ମୁଁ ସନ୍ତୋଷ ଲାଭ କଲି । ତୁମର ଇଚ୍ଛା ପୂରଣ ହେବ ।'' ଏତିକି କହି ଦେବୀ ରାଜାଙ୍କ ହାତକୁ ଗୋଟିଏ ମେଜିକ୍ ପୋଷାକ ବଢ଼ାଇଦେଲେ । କହିଲେ, ଏଇ ପୋଷାକ ପିନ୍ଧି ତୁମେ ପାଣିରେ ବୁଡ଼ିପଡ଼ିବ । ତୁମର କିଛି କ୍ଷତି ହେବନାହିଁ । ତୁମର ପୂର୍ବ ରୂପ ଏବଂ ଶକ୍ତି ଫେରିଆସିବ ।''

ରାଜା ଜଳଦେବୀଙ୍କୁ ଭକ୍ତିରେ ପ୍ରଣାମ କରି ପୋଷାକ ପିନ୍ଧିଲେ ଏବଂ ସେହି ଫୁଟନ୍ତା ପାଣି ଭିତରେ ବୁଡ଼ିପଡ଼ିଲେ । କେତେ ସମୟ ପରେ ପାଣିରୁ ଉଠି ରାଜା ଦେଖିଲେ ତାଙ୍କର ପୂର୍ବ ରୂପ ଆଉ ଶକ୍ତି ଫେରିଆସିଛି । ରାଜା ପାହାଚ ଉପରକୁ ଉଠିଲା ପରେ ଦେଖିଲେ, ଜଣେ ଦେବତା ତାଙ୍କୁ ଅପେକ୍ଷା କରିଛନ୍ତି । ସେ ରାଜାଙ୍କୁ ସ୍ନେହରେ ସୁନାଃ ଜରୀର ପୋଷାକଟିଏ ବଢ଼ାଇଦେଇ ଆଶୀର୍ବାଦ କଲେ । ରାଜା ଦେବତାଙ୍କୁ ପ୍ରଣାମ କଲେ ।

ଦେବତା କହିଲେ, ''ବୈରୀଗଞ୍ଜନ ! ତୁମର ଧୈର୍ଯ୍ୟ ଓ ସାହସ ଦେଖି ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛି । ମୋରି ଝିଅ ତୁମ ଉପରେ ବିରକ୍ତ ହୋଇ ତୁମକୁ ଏପରି କଷ୍ଟ ଦେଇଛି । ସେଥିପାଇଁ ସେ ସ୍ୱର୍ଗରେ ଯଥେଷ୍ଟ ଦଣ୍ଡ ଭୋଗିଲାଣି । ମୁଁ ଅନୁରୋଧ କରୁଛି; ତୁମେ ତାକୁ ରାଣୀ ଭାବରେ ଗ୍ରହଣ କର । ସେ ସାରାଜୀବନ ତୁମକୁ ସେବା କରିବ । ତୁମର ପାଖେ ପାଖେ ରହିବ ।''

ଏତିକିବେଳେ ଜଣେ ଅପୂର୍ବ ସୁନ୍ଦରୀ ଦେବକନ୍ୟା ଆସି ରାଜାଙ୍କ ପାଦତଳେ ପ୍ରଣାମ କଲେ । ରାଜା ସେ କନ୍ୟାଟିକୁ ଚିହ୍ନିପାରିଲେ । ଦେବକନ୍ୟା କହିଲା—''ରାଜା ମୋତେ କ୍ଷମା କରନ୍ତୁ ।''

ରାଜା ଦେବତାଙ୍କୁ ପ୍ରଣାମ କରି ଦେବକନ୍ୟାଙ୍କୁ ସ୍ନେହରେ ଉଠାଇନେଲେ । ସେମାନେ ବିବାହ କରି ସୁଖରେ ରାଜ୍ୟ ପାଳନ କଲେ । ରାଇଜର ଲୋକେ ପ୍ରିୟ ରାଜାଙ୍କୁ ଫେରିପାଇ ଅତ୍ୟନ୍ତ ସୁଖୀ ହେଲେ ।



# ଭାଗ୍ୟ ପରୀକ୍ଷା

ଆଗ କାଳର କଥା । ଗୋଟିଏ ରାଜ୍ୟରେ ରାଜା କୁମାରଗୁପ୍ତ ରାଜୁତି କରୁଥାଆନ୍ତି । ପ୍ରଜାମାନେ କିପରି ସୁଖରେ ରହିବେ, ସେଥିପାଇଁ ରାଜାଙ୍କର ସବୁବେଳେ ଚିନ୍ତା । ମନ୍ତ୍ରୀ, ସେନାପତିମାନଙ୍କୁ ରାଜାଙ୍କର କଠୋର ନିର୍ଦ୍ଦେଶ ଥାଏ, ଯେପରି ପ୍ରଜାମାନେ ଅତ୍ୟାଚାରିତ ନ ହୁଅନ୍ତି । ରାଜାଙ୍କର ଦଣ୍ଡ ଭୟରେ ଚୋରୀ, ଡକାୟତି ଆଦୌ ନ ଥିଲା । ପ୍ରଜାମାନେ କୃଷି କର୍ମ କରି ସୁଖରେ ଚଳି ଯାଉଥିଲେ । ରାଜ୍ୟରେ ଭଲ ରାସ୍ତା, ଡାକ୍ତରଖାନା ଓ ପାଠଶାଳା ପାଇଁ ରାଜକୋଷରୁ ପ୍ରଚୁର ଅର୍ଥ ବରାଦ କରାଯାଉଥାଏ । ରାଜା ଥିଲେ ପ୍ରଜାମାନଙ୍କର ବାପା, ମା' ସଦୃଶ । ଯେକୌଣସି ସମୟରେ ରାଜାଙ୍କ ଦରବାରରେ ପ୍ରଜାମାନେ ହାରି ଗୁହାରୀ ଜଣାଇ ପାରୁଥିଲେ । ରାଜକର୍ମଚାରୀମାନେ ପ୍ରକୃତରେ ତାଙ୍କର କର୍ତ୍ତବ୍ୟ କରୁଛନ୍ତି କି ନାହିଁ, ଏଥିପାଇଁ ବେଳେବେଳେ ରାଜା ଅନ୍ଧାରୀବିଜେ କରୁଥିଲେ ।

ରାଜା କୁମାରଗୁପ୍ତଙ୍କର ତିନି ପୁଅ । ରୂପରେ ଗୁଣରେ କେହି କାହାଠାରୁ କମ୍ ନୁହଁନ୍ତି । ସେମାନେ କ୍ରମଶଃ ବଡ଼ ହେଲେ । ଶାସ୍ତ୍ରବିଦ୍ୟା ଓ ଶସ୍ତ୍ର ବିଦ୍ୟାରେ ପାରଙ୍ଗମ ହୋଇଉଠିଲେ । ରାଜ ପରିବାରରେ ଜନ୍ମ ହୋଇଥିଲେ ହେଁ ସେମାନଙ୍କର ମନରେ ଆଦୌ ଗର୍ବ ଅଭିମାନ ନ ଥିଲା । ସେଥିପାଇଁ ରାଜ୍ୟରେ ରାଜକୁମାରମାନଙ୍କର ଅତିଶୟ ପ୍ରଶଂସା ହେଉଥାଏ ।

ଏତେ ସୁଖରେ କିନ୍ତୁ ରାଜାଙ୍କର ଗୋଟିଏ ଅଭାବ ଥାଏ । ତାଙ୍କ କୋଳରେ ଝିଅଟିଏ ନ ଥାଏ । ତେଣୁ ରାଜା ଓ ରାଣୀଙ୍କର ମନରେ ସୁଖ ନ ଥାଏ ।

ଦିନକର କଥା । ରାଜା ଛଦ୍ମ ବେଶରେ ଗୋଟିଏ ଗାଁରେ ପହଞ୍ଚିଲେ । ଘର ଘର ବୁଲି ନିଜକୁ ସୌଦାଗର ବୋଲି ପରିଚୟ ଦେଉଥାଆନ୍ତି । ଲୋକମାନଙ୍କର ସୁଖ ଦୁଃଖ ମଧ୍ୟ ଲକ୍ଷ୍ୟ କରୁଥାଆନ୍ତି । ସେହି ଗାଁର ଶେଷରେ ଜଣେ ବୁଢ଼ୀର ଘର । ବୟସ ହେବ ନବେ ପାଖାପାଖି । ତାର ପୁଅ ବୋହୂ ସମସ୍ତେ ଅକାଳରେ ମରିଯାଇ ଥାଆନ୍ତି । ଏକମାତ୍ର ନାତୁଣୀଟିଏ ଥାଏ । ଏତେ ଅଭାବରେ ବୁଢ଼ୀ ବଡ଼ ଯତ୍ନରେ ନାତୁଣୀଟିକୁ ପାଳିଥାଏ । ନାତୁଣୀର ନାଁ ହେଉଛି ନୟନତାରା ।

ବୁଢ଼ୀ ବାର ଘରେ ପାଞ୍ଚ ପାଇଟି କରି ଚଳୁଥିଲେ । ଏବେ ବୟସ ହୋଇଯିବାରୁ ଆଖିକୁ ଭଲ ଦେଖାଯାଏ ନାହିଁ । ବଡ଼ ଦୁର୍ବଳ ମଧ୍ୟ ହୋଇଗଲାଣି । ତେଣୁ ନୟନତାରା ତାକୁ କାମକୁ ଛାଡ଼ିଦିଏ ନାହିଁ । ନିଜେ ପାଖ ଜଙ୍ଗଲକୁ ଯାଇ କାଠ ହାଣି ବଜାରରେ ବିକି ଦିଏ । ସେଇ ପଇସାରେ ଦୁଇ ପ୍ରାଣୀ ଦୁଃଖେ ସୁଖେ ଚଳିଯାଆନ୍ତି ।

ଗରିବ ହୋଇଥିବାରୁ ଗାଁରେ ବୁଢ଼ୀକୁ କେହି ଆଡ଼ ଆଖିରେ ଚାହାନ୍ତି ନାହିଁ । ସେଥିପାଇଁ ନୟନତାରାର ଖାତିରି ନ ଥାଏ । ସେ କାହାରି ଦୁଆରକୁ ଯାଏନାହିଁ । ନିଜର ଘର କାମ କରେ, ବୁଢ଼ୀମା'ର ସେବା କରେ । ସମୟ ପାଇଲେ ନିଜ ବାଡ଼ିରେ ଫୁଲ ଗଛମାନଙ୍କର ଯତ୍ନ ନିଏ ।

ସୌଦାଗରବେଶୀ କୁମାରଗୁପ୍ତ ଶେଷରେ ଯାଇ ବୁଢ଼ୀ ଘର ପିଣ୍ଡାରେ ବସିପଡ଼ିଲେ । ରାଜାଙ୍କୁ ବଡ଼ ଶୋଷ ହେଉଥାଏ । ଭୋକ ମଧ ହେଉଥାଏ । ବିଦେଶୀଙ୍କୁ ଦେଖି ନୟନତାରା ଘର ଭିତରୁ ବୁଢ଼ୀମା'କୁ ଡାକିଆଣିଲା । ବୁଢ଼ୀ ଆସି ଦାଣ୍ଡ ଦୁଆରେ ବିଦେଶୀ ଜଣକୁ ଆଦରରେ ଘର ଭିତରକୁ ଡାକି ଆଣିଲା । ସପ ପାରି ଦେଇ କହିଲା, ''ପୁଅ ବସ । ତୁ ତ ବଡ଼ ଲୋକର ପୁଅ ପରି ଦିଶୁଛୁ । ତୋତେ ଚର୍ଚ୍ଚା କରିବାକୁ ମୋର କ'ଣ ଅଛି ? ମୋତେ ଲାଗୁଛି, ତୁ ବଡ଼ ଭୋକିଲା ଅଛୁ । ଗରିବ ଘରେ ତୋ ମନଲାଖି ଜିନିଷ କେଉଁଠୁ ପାଇବି ?''

ରାଜା କହିଲେ, ''ମା, ତୁମ ଘରେ ଯାହା ଅଛି ଦିଅ । ପ୍ରକୃତରେ ମୋତେ ବଡ଼ ଭୋକ ଲାଗୁଛି ।''

ବୁଢ଼ୀ ନୟନତାରାକୁ ଡାକି କହିଲା, ''ତାରା ! ଗୁଡ଼ ଗୋଳେଇ ଛତୁଆ ଗଣ୍ଡିଏ ଆଣ । ବିଦେଶୀ ପୁଅ ମୋର ଠା କରିବ ।

ନୟନତାରା ବାଢ଼ିଦେଲା । ରାଜା ଖାଉ ଥାଆନ୍ତି । ବୁଢ଼ୀର ସ୍ନେହ ଓ ଆନ୍ତରିକତା ଯୋଗୁଁ ତାହା ଅମୃତ ପରି ଲାଗୁଥାଏ । ମନେ ହେଉଥାଏ, ରାଜମହଲରେ ମଧ ସେ ଏପରି ଆନନ୍ଦରେ କେବେହେଲେ ଖାଇନାହାନ୍ତି । ପାଖରେ ବସି ନୟନତାରା ପଙ୍ଖା କରିଦେଉଥାଏ ।

ରାଜାଙ୍କ ଆଗରେ ବୁଢ଼ୀ ଦୁଃଖ କହି ଲୁହ ଝରାଉଥାଏ । ''ବୁଝିଲୁ ପୁଅ ! ମୁଁ ତ ଝଡ଼ିଲା ପତର । ଆଜି ଅଛି, କାଲିକୁ ନାହିଁ । କେତେ ଗେଲବସରରେ 'ତାରା'କୁ ପାଳିଥିଲି । ମୁଁ ଆଖି ବୁଜିଲେ ତାର ଭବିଷ୍ୟତ କ'ଣ ହେବ । ମୋର ତ ବାସି ଓଳିକୁ ଦାନା ନାହିଁ । ତାକୁ ଅବା ହାତକୁ ଦି'ହାତ କିପରି କରିବି ? ସେହି ଚିନ୍ତାରେ ଝୁରି ହେଉଛି ।''

ରାଜା ନୟନତାରାର ରୂପ ଏବଂ ସଣ୍ଣା ପଣ ଦେଖି ଭାରି ଖୁସି ହେଉଥାଆନ୍ତି । ଏତେ ଅଭାବ ସତ୍ତ୍ୱେ ଝିଅଟି କାହାରି ପାଖରେ ହାତ ନ ପତାଇ ନିଜ ଗୋଡ଼ରେ ଠିଆ ହେବାକୁ ଶିଖିଛି । ନିଜେ ପରିଶ୍ରମ କରି ପରିବାର ପ୍ରତିପୋଷଣ କରୁଛି ଏବଂ ବୁଢ଼ୀମା'ର ଯତ୍ନ ନେଉଛି । ଝିଅଟିର ମର୍ଯ୍ୟାଦାବୋଧ ରାଜାଙ୍କୁ ଅଧିକ ମୁଗ୍ଧ କଲା ।

ରାଜା ବୁଢ଼ୀଠାରୁ ବିଦାୟ ନେଲାବେଳେ ତା' ହାତରେ ମୋହରଟିଏ ଦେଇଗଲେ । କହିଲେ, ''ମା' ତୁମେ ବ୍ୟସ୍ତ ହୁଅନାହିଁ । ତାରା ପାଇଁ ମୁଁ ସମସ୍ତ ବ୍ୟବସ୍ଥା କରିଦେବି ।''

ସୌଦାଗରବେଶୀ ରାଜା ରାଜଧାନୀକୁ ଫେରିଆସିଲେ । ବୁଢ଼ୀ ମୋହରଟିକୁ ନେଇ ଦୋକାନକୁ ଗଲା କିଛି ସଉଦା ଆଣିବ ବୋଲି । ଦୋକାନୀ ଯେମିତି ସୁନା ମୋହରଟି ବୁଢ଼ୀ ହାତରେ ଦେଖିଲା, ସେ ତାଟକା ହୋଇଗଲା । ଦୋକାନୀ ପିଣ୍ଡାରେ ଆଉ ପାଞ୍ଚଜଣ ଗାଁ ଲୋକ ମଧ୍ୟ ସଉଦା ପାଇଁ ଅପେକ୍ଷା କରିଥିଲେ । ସମସ୍ତେ ଏକସ୍ୱରରେ କହିଲେ ବୁଢ଼ୀ କେଉଁଠାରୁ ସୁନା ମୋହର ଚୋରୀ କରି ଆଣିଛି । ବୁଢ଼ୀ ଯେତେ ବୁଝାଇ କହିଲା, କାଲି ସଉଦାଗର ପୁଅ ତାକୁ ଏହି ମୋହରଟି ଦେଇଛି ବୋଲି, କିଏ କାହିଁକି ବିଶ୍ୱାସ କରିବ ? ଗରିବ ଲୋକକୁ ତ କେହି ଆଡ଼ ଆଖିରେ ଦେଖିପାରନ୍ତି ନାହିଁ ।

କଥା ଚର୍ଚ୍ଚା ହୋଇ ଗାଁ ଚୌକିଦାର ପର୍ଯ୍ୟନ୍ତ ଗଲା । ସେ ବୁଢ଼ୀକୁ ଧରି ନେଇଗଲା ରାଜା ଘରେ ଫେରାଦ କରିବା ପାଇଁ । ନୟନତାରା କାନ୍ଦି କାନ୍ଦି ବୁଢ଼ୀ ସହିତ ଯାଉଥାଏ । ଗାଁ ଲୋକ ସମସ୍ତେ ଛି ଛାକର କରୁଥାଆନ୍ତି । ନ କହିଲା ଲୋକ ମଧ୍ୟ ଦୁଇ କଥା କହୁଥାଏ ।

ରାଜାଙ୍କ ନଅରରେ ଦରବାର ବସିଥାଏ । ଚୌକିଦାର ବୁଢ଼ୀ ଓ ତାରାକୁ ନେଇ ମିସଲ ଉପରେ ଠିଆ କରାଇଲା ଏବଂ ତା'ଠାରୁ ସୁନାମୋହର ଧରା ପଡ଼ିଥିବା କଥା କହିଲା । ବିଚାରକ ଆସନରେ ରାଜା ବସିଥାନ୍ତି । ବୁଢ଼ୀ ଆଖିକୁ ତ ଝାପ୍‌ସା ଦେଖାଯାଉଥାଏ, ସେ କିଛି ଜାଣିପାରୁ ନ ଥାଏ । ଖାଲି କାନ୍ଦି କରି କହୁଥାଏ––"ମଣିମା ! ମୋତେ କ୍ଷମା କର । ମୁଁ ଆଦୌ ଚୋରି କରିନାହିଁ । ସୌଦାଗର ପୁଅ ମୋତେ ଏହି ମୋହରଟି ଦେଇଥିଲେ । ମୁଁ କି ଜାଣେ, ତାହା ରାଜାଘରର ସୁନାମୋହର ବୋଲି ।"

ନୟନତାରା ରାଜାଙ୍କ ଆଡ଼କୁ ଚାହିଁ ତାଜୁବ ହେଉଥାଏ । ଏ ତ ଅବିକଳ ସେହି ସୌଦାଗର । ଚେହେରା ଏକାବେଳେକେ ମିଳିଯାଉଛି । ଦରବାରରେ ମନ୍ତ୍ରୀ, ସେନାପତି ଓ ଅନ୍ୟପାରିଷଦମାନେ ବୁଢ଼ୀର ଅବସ୍ଥା ଦେଖି ବିକଳ ହେଉଥାଆନ୍ତି ।

ରାଜା ସିଂହାସନରୁ ଓହ୍ଲାଇ ଆସି ନିଜେ ବୁଢ଼ୀର ହାତରୁ ଦଉଡ଼ିର ଫାଶ ଖୋଲି ଦେଲେ । ନୟନତାରାକୁ ଆଦରରେ କୋଳେଇ ନେଲେ । ରାଜା କହିଲେ––"ମା' ତୁମେ ବ୍ୟସ୍ତ ହୁଅନାହିଁ । ତୁମେ ଆଦୌ ଚୋରି କରିନାହଁ । ସୌଦାଗର ତୁମକୁ ମୋହର ଦେବା କଥା ମୁଁ ଜାଣେ । ମୁଁ ସେହି ସୌଦାଗର ବେଶରେ ତୁମ ଘରେ ଅତିଥି ହୋଇଥିଲି ।" ଦରବାରର ପାରିଷଦଗଣ ଆଶ୍ଚର୍ଯ୍ୟ ହୋଇଗଲେ ।

ବୁଢ଼ୀ କହିଲା––"ମଣିମା, ଅଜାଣତରେ ଆପଣଙ୍କ ପ୍ରତି ଅନ୍ୟାୟ କରିଥିଲି । ଗରିବ କୁଡ଼ିଆରେ ଆପଣ ପାଦ ପକାଇଥିଲେ । ଏହା ମୋର କେଡ଼େ ବଡ଼ ଭାଗ୍ୟର କଥା ।"

ଆପଣାର ଲୋକ ପରି ବୁଢ଼ୀ ଏବଂ ନୟନତାରା ରାଜମହଲରେ ଅବସ୍ଥାନ କଲେ । ରାଜାରାଣୀ ନୟନତାରାକୁ ଝିଅ ପରି ସ୍ନେହ କରୁଥାଆନ୍ତି ।

ରାଜାଙ୍କର ତିନି ପୁଅ ନୟନତାରାର ରୂପରେ ମୁଗ୍ଧ ହୋଇପଡ଼ିଲେ । ସମସ୍ତେ ପ୍ରସ୍ତାବ କଲେ ତାକୁ ବିବାହ କରିବା ପାଇଁ ।

ରାଜା ବିଷମ ସଙ୍କଟରେ ପଡ଼ିଲେ । ତାଙ୍କର ମଧ୍ୟ ଇଚ୍ଛା, ନୟନତାରା ପରି ଝିଅଟିଏ ତାଙ୍କର ବୋହୂ ହେବା ପାଇଁ ଯୋଗ୍ୟା ।

ରାଜା ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କରି ପ୍ରସ୍ତାବ ରଖିଲେ । ପ୍ରତ୍ୟେକ ପୁଅକୁ ଦଶହଜାର ଟଙ୍କା ଲେଖାଏଁ ଦିଆଗଲା । କୁହାଗଲା, ତାରା ପାଇଁ ଯେ ସବୁଠାରୁ ଭଲ ଜିନିଷଟିଏ ଆଣିଦେବ, ସେହି କେବଳ ତାକୁ ବିବାହ କରିବାପାଇଁ ହକ୍‌ଦାର ହେବ ।

ତିନିପୁଅ ତିନି ଦିଗକୁ ବାହାରିଗଲେ । ବଡ଼ ପୁଅ କେତେ ବଣ, ବିଲ, ଗାଁ ଅତିକ୍ରମ କରି ଗୋଟିଏ ସହରରେ ପହଞ୍ଚିଲା । ସେଠାରେ ଦେଖିଲା, ଏକ ସ୍ଥାନରେ କିଛି ଲୋକ ଗୋଟିଏ ଘୋଡ଼ା ଗାଡ଼ିକୁ ଘେରି ଠିଆ ହୋଇଛନ୍ତି । ପାଖକୁ ଯାଇ ବୁଝିଲା, ଗାଡ଼ିଟି ବିକ୍ରି ହେବ । ଦାମ୍ ଦଶହଜାର ଟଙ୍କା । ଏତେ ଟଙ୍କା ଅବା କିଏ କାହିଁକି ଦେବ ? ରଜାପୁଅ ପଚାରିଲା ଏହି ସାମାନ୍ୟ ଗାଡ଼ି ପାଇଁ ଏତେ ଟଙ୍କା କାହିଁକି ? ଗାଡ଼ିବାଲା କହିଲା, ଏହା ଏକ କୁହୁକ ଗାଡ଼ି । ଦଶହଜାର ବାଟ ଦଶ ଘଣ୍ଟାରେ ପହଞ୍ଚାଇ ଦେବ । ରାଜାପୁଅ ଖୁସି ହୋଇ ଟଙ୍କା ପୈଠ କରି ଗାଡ଼ିଟି କିଣିଲା ।

ମଝିଆ ପୁଅ ସେହିପରି ଆଉ ଏକ ସହରରେ ପହଞ୍ଚିଲା । ସେଠାରେ ହାଟ ହେଉଥାଏ । ଗୋଟିଏ ଦର୍ପଣ ବେପାରୀ ଦଶହଜାର ଟଙ୍କାର ଦାମ୍ ବୋଲି ଦର୍ପଣଟିଏ ଦେଖାଉଥାଏ । ଏତେ ଟଙ୍କା ଦେଇ କିଏ କାହିଁକି ଦର୍ପଣଟାଏ କିଣିବ ? ରାଜାପୁଅ ଏହାର କାରଣ ପଚାରିଲା । ବେପାରୀ କହିଲା, ଯେତେ ଦୂରରେ ଯେ ଥାଉ, ଏହି ଦର୍ପଣରେ ତାକୁ ତୁମେ ଦେଖିପାରିବ । ବିନା ଆପତ୍ତିରେ ଟଙ୍କା ଦେଇ ରଜାପୁଅ ଦର୍ପଣଟି କିଣିଲା । ଭାବିଲା ନୟନତାରା ପାଇଁ ଏହି ଦର୍ପଣଟି ଭଲ ଉପହାରଟିଏ ହେବ ।

ସାନ ରାଜକୁମାର ଯାଇ ଆଉ ଏକ ସହରରେ ପହଞ୍ଚିଲା । ସେଠାରେ ଜଣେ ସନ୍ନ୍ୟାସୀ ଦଶହଜାର ଟଙ୍କାରେ ଗୋଟିଏ ଫଳ ବିକ୍ରି କରିବା ପାଇଁ ଡାକୁଥାଆନ୍ତି । ସାମାନ୍ୟ ଫଳଟାଏ ପାଇଁ ଏତେ ଟଙ୍କା ଅବା କିଏ କାହିଁକି ଦେବ ? ରଜାପୁଅ ଆଶ୍ଚର୍ଯ୍ୟ ହୋଇ ପଚାରିବାକୁ ଗଲା । ସନ୍ନ୍ୟାସୀ କହିଲେ, ''ବାବୁ ! ଏହା ହେଉଛି ଅମୃତର ଫଳ । ଏହି ଫଳ ଖାଇଲେ ଯେକୌଣସି ରୋଗ ଆରୋଗ୍ୟ ହୋଇଯିବ । ମନୁଷ୍ୟ ମୃତ୍ୟୁମୁଖରୁ ରକ୍ଷା ପାଇବ ।''

ତିନିଭାଇ ଯାକ ଫେରିବା ବାଟରେ ଗୋଟିଏ ଛକ ସ୍ଥାନରେ ଏକାଠି ହୋଇ ପରସ୍ପର ଜିନିଷ ବିଷୟରେ ଆଲୋଚନା କଲେ । ମଝିଆ ଭାଇ ଦର୍ପଣରେ ଦେଖିଲା

ଯେ, ରାଜମହଲରେ ସମସ୍ତେ ମନଦୁଃଖରେ ଅଛନ୍ତି । ନୟନତାରା ରୋଗଶଯ୍ୟାରେ ଛଟପଟ ହେଉଛି । ରାଜବୈଦ୍ୟଙ୍କ ସମସ୍ତ ଚିକିତ୍ସା ବ୍ୟର୍ଥ ହେବା ଉପରେ । ବଡ଼ପୁଅ ଘୋଡ଼ାଗାଡ଼ିରେ ବସି ସମସ୍ତେ ତୁରନ୍ତ ଆସି ରାଜମହଲରେ ପହଞ୍ଚିଲେ । ରାଜା ପୁଅମାନଙ୍କୁ ଦେଖି ସନ୍ତୋଷ ଲାଭ କଲେ ।

ନୟନତାରା ପାଖକୁ ଯାଇ ସାନ ରାଜକୁମାର ଆଣିଥିବା ଫଳଟି ଖାଇବାକୁ ଦେଲା । ସେ ଝାଡ଼ିଝୁଡ଼ି ହୋଇ ଉଠିବସିଲା । ରାଜାରାଣୀ ଶାନ୍ତିରେ ନିଶ୍ୱାସ ମାରିଲେ ।

ବର୍ତ୍ତମାନ ପ୍ରଶ୍ନ ହେଲା, ନୟନତାରାକୁ କେଉଁ ରାଜକୁମାର ବାହାହେବ । ଦରବାର ବସିଲା । ତିନିରାଜକୁମାର ଆଣିଥିବା ଜିନିଷକୁ ସମସ୍ତେ ପ୍ରଶଂସା କଲେ । ରାଜା କହିଲେ ମୋର ତିନି ରାଜକୁମାର ବୁଦ୍ଧିମାନ ଆଉ ଯୋଗ୍ୟ । ଭଲ ଜିନିଷ ଆଣିଛନ୍ତି । ଯେ ନୟନତାରାକୁ ବିବାହ କରିବ, ସେହି ହେବ ମୋ ପରେ ଏହି ରାଜ୍ୟର ଉତ୍ତରାଧିକାରୀ ।

ବଡ଼ ରାଜକୁମାର କହିଲା, ''ମୋ ଘୋଡ଼ାଗାଡ଼ିରେ ଚଞ୍ଚଳ ନ ଆସିଥିଲେ ନୟନତାରା ଜୀବନ ପାଇନଥାନ୍ତା । ତେଣୁ ମୋର ଦାବୀ ହେଉଛି ପ୍ରଥମ ।'' ମଝିଆ ପୁଅ କହିଲା, ''ମୋ ଦର୍ପଣ କହିଲା ନୟନତାରା ପୀଡ଼ିତା ବୋଲି । ନଚେତ୍ ଆମେ ଆସିଥାଆନ୍ତେ କାହିଁକି ?'' ସାନ ରାଜକୁମାର ନୀରବ ରହିଲା ।

ରାଜା ଏବଂ ରାଜପରିଷଦ କିଛି ନିଷ୍ପତ୍ତି କରିପାରିଲେ ନାହିଁ । ରାଜସଭାରେ ଜଣେ ବୃଦ୍ଧଲୋକ ଉପସ୍ଥିତ ଥିଲେ । ସେ କହିଲେ, ''ମଣିମା ! ମୋତେ କହିବା ପାଇଁ ଅନୁମତି ଦିଆଯାଉ । ନୟନତାରାଙ୍କ ପାଇଁ ଭଲ ଜିନିଷ ଆଣିବାକୁ ଆପଣ କହିଥିଲେ । ଅନ୍ୟ ରାଜକୁମାର ଯାହା ଆଣିଛନ୍ତି, ତାହା ଭଲ ନିଶ୍ଚୟ । ମାତ୍ର ସାନରାଜକୁମାରଙ୍କ ଫଳ ନୟନତାରାକୁ ଜୀବନ ଦାନ କଲା । ଜୀବନଠାରୁ ଆଉ କିଛି ମୂଲ୍ୟବାନ ଅଛି କି ?''

ରାଜପାରିଷଦଗଣ ସମସ୍ତେ ବୃଦ୍ଧଙ୍କୁ ଧନ୍ୟବାଦ ଜଣାଇଲେ ।

ରାଜା ସାନପୁଅ ସହିତ ନୟନତାରାର ବାହାଘର କରିଦେଲେ । ରାଜାଙ୍କ ଅନ୍ତେ ସେମାନେ ରାଜା ରାଣୀ ହୋଇ ସୁଖରେ ରାଜ୍ୟ ପାଳନ କଲେ ।



# ଅବିଶ୍ୱାସର ଫଳ

ପ୍ରାଚୀନ କାଳର କଥା । ଗୁରୁଗୃହରେ ରହି ଶିଷ୍ୟମାନେ ବିଦ୍ୟାଶିକ୍ଷା କରିବାର ପ୍ରଥା ଥାଏ । ଗୋଟିଏ ସହରରେ 'ବର୍ଷ' ନାମରେ ଜଣେ ଗୁରୁ ଥିଲେ । ସବୁ ବିଦ୍ୟାରେ ସେ ଥିଲେ ପଣ୍ଡିତ । ନାନା ଦେଶରୁ ଶିଷ୍ୟମାନେ ଆସି ତାଙ୍କ ପାଖରେ ବିଦ୍ୟାଶିକ୍ଷା କରୁଥାଆନ୍ତି ।

ଥରେ ବ୍ୟାଡ଼ି, ବରୁରୁଚି ଓ ଇନ୍ଦ୍ରଦତ୍ତ ନାମରେ ତିନିଜଣ ବନ୍ଧୁ ପାଠ ପଢ଼ିବା ପାଇଁ ଇଚ୍ଛା କଲେ । ସେମାନେ ଗୁରୁ ବର୍ଷଙ୍କ ନାମ ଶୁଣିଥିଲେ । ତେଣୁ ତାଙ୍କରି ପାଖରେ ପହଞ୍ଚିଲେ ପାଠ ପଢ଼ିବା ପାଇଁ ।

ଅଳ୍ପକାଳ ମଧ୍ୟରେ ତିନିବନ୍ଧୁ ନାନା ବିଦ୍ୟାରେ ପାରଙ୍ଗମ ହୋଇଉଠିଲେ । ତିନିବନ୍ଧୁଙ୍କ ମଧ୍ୟରୁ ବରୁରୁଚି ବ୍ୟାକରଣ ଶାସ୍ତ୍ରରେ ଅଗାଧ ଜ୍ଞାନ ଅର୍ଜନ କଲେ । ଗୁରୁ ବର୍ଷ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କଲେ । ସେ ନିଜର କନ୍ୟା ଉପକୋଶାଙ୍କୁ ବିବାହ ଦେଇ ବରୁରୁଚିଙ୍କୁ ଜାମାତା ପଦରେ ବରଣ କଲେ ।

ପାଠପଢ଼ା ଶେଷ ହେଲା । ତିନିବନ୍ଧୁ ବିଦାୟ ନେଇ ଘରକୁ ଫେରିବେ । ଗୁରୁଙ୍କୁ ପ୍ରାର୍ଥନା କଲେ 'ଦକ୍ଷିଣା' ଦେବାପାଇଁ । ଗୁରୁ ଓ ଗୁରୁପତ୍ନୀ କହିଲେ, ''ବରୁରୁଚି ଆମର ଜାମାତା ଏବଂ ତୁମେ ଦୁହେଁ ଜାମାତାଙ୍କର ଅନ୍ତରଙ୍ଗ ବନ୍ଧୁ । ତୁମ ତିନିଜଣଙ୍କର ସେବାରେ ଆମ ସନ୍ତୋଷ ଲାଭ କରିଅଛୁ । ଆମର ଗୁରୁଦକ୍ଷିଣା ଆବଶ୍ୟକ ନାହିଁ ।

ମାତ୍ର ଏ କିପରି କଥା ? ଗୁରୁଦକ୍ଷିଣା ନ ଦେଲେ ବିଦ୍ୟା ଅର୍ଜନ ସଫଳ ହୁଏନାହିଁ ବୋଲି କୁହାଯାଏ । ବ୍ୟାଡ଼ି ଓ ଇନ୍ଦ୍ର ଜିଗର କଲେ ଗୁରୁଦକ୍ଷିଣା ଦେବାପାଇଁ । ଗୁରୁ ଏଥିରେ କ୍ରୋଧ ପ୍ରକାଶ କରି କହିଲେ, ''ଯଦି ଏପରି ଭାବୁଛ, ତେବେ ମୋତେ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ଦେବାକୁ ହେବ ।''

ତିନିବନ୍ଧୁ ହସି ହସି ଗୁରୁ ଗୃହରୁ ବିଦାୟ ନେଲେ । ଗୁରୁଙ୍କୁ ପ୍ରଣାମ ଜଣାଇ କହିଲେ, ''ଆମକୁ ଆଶୀର୍ବାଦ କରନ୍ତୁ । ଆମେ ଯେପରି ଅବିଳମ୍ବେ ଦକ୍ଷିଣା ଯୋଗାଡ଼ କରି ଆପଣଙ୍କୁ ଦର୍ଶନ କରିବୁ ।''

ବରୁରୁଚି କହିଲେ, ''ସେ ପର୍ଯ୍ୟନ୍ତ ମୋର ପତ୍ନୀ ଉପକୋଷା ଆପଣଙ୍କ ପାଖରେ ରହିବେ । ଉପକୋଶା ଓ ଗୁରୁପତ୍ନୀ ବରୁରୁଚିଙ୍କୁ ବିଦାୟ ଦେଇ ଦୁଃଖରେ ଭାଙ୍ଗିପଡ଼ିଲେ ।

ତିନିବନ୍ଧୁ ନାନା ଦେଶ ବୁଲିବାକୁ ଲାଗିଲେ । ବହୁ ମହାଜନ ଓ ସୌଦାଗରଙ୍କୁ ମଧ୍ୟ ଭେଟିଲେ । ମାତ୍ର କେହି ତାଙ୍କର ଦକ୍ଷିଣାର ମୂଲ୍ୟ ପୂରଣ କରିବା ପାଇଁ ଦାନ ଦେଇପାରିଲେ ନାହିଁ ।

ତଥାପି ତିନିବନ୍ଧୁ ଆଶା ଛାଡ଼ି ନଥା'ନ୍ତି । କୌଣସି ଏକ ଜନପଦରେ ସେମାନେ ଶୁଣିବାକୁ ପାଇଲେ ଯେ, ମହାରାଜା ଯୋଗାନନ୍ଦ ଜଣେ ଅତ୍ୟନ୍ତ ଦାନୀ ରାଜପୁରୁଷ । ସେ ହୁଏତ ତାଙ୍କର ଅଭିଳାଷ ପୂରଣ କରିପାରିବେ । ତିନିବନ୍ଧୁ ରାଜଧାନୀ ଅଯୋଧ୍ୟା ଅଭିମୁଖେ ଚାଲିଲେ ।

ତିନିବନ୍ଧୁ ଅଯୋଧ୍ୟାର ରାଜଦାଣ୍ଡରେ ଚାଲୁ ଚାଲୁ ଦେଖିଲେ, ପ୍ରଜାମାନଙ୍କ ମନରେ ସରାଗ ନାହିଁ । ସମସ୍ତେ ନୀରବରେ ଲୁହ ଗଡ଼ାଉଛନ୍ତି । ରାଇଜଯାକ ହାହାକାର ପଡ଼ିଯାଇଛି । କାରଣ ସେହିଦିନ ତାଙ୍କର ପ୍ରିୟ ରାଜା ମୃତ୍ୟୁବରଣ କରିଅଛନ୍ତି ।

ତିନିବନ୍ଧୁଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା । ଏବେ ସେମାନେ କି ଉପାୟରେ ଗୁରୁ ଋଣ ପରିଶୋଧ କରିବେ !!

ସହର ବାହାରେ ଗୋଟିଏ ଭଙ୍ଗା ଦେଉଳ ଥାଏ । ସେଠାକୁ ସାଧାରଣତଃ କେହି ଯାଆନ୍ତି ନାହିଁ । ସେହିଠାରେ ତିନି ବନ୍ଧୁ ଆଶ୍ରୟ ନେଲେ ।

ଇନ୍ଦ୍ରଦତ୍ତ କହିଲା, ''ମୋତେ ଏକ ଗୁପ୍ତ ବିଦ୍ୟା ଜଣାଅଛି । ମୁଁ ମନ୍ତ୍ରବଳରେ କାୟା ପ୍ରବେଶ କରିପାରିବି । ଏଇ ମୃତ ରାଜାଙ୍କର ଶରୀର ସତ୍କାର ପୂର୍ବରୁ ମୁଁ ମନ୍ତ୍ରବଳରେ ତାଙ୍କ ଦେହରେ ପ୍ରବେଶ କଲେ ସେ ବଞ୍ଚିଉଠିବେ । ତହୁଁ ବରୁରୁଚି ଅର୍ଥଭିକ୍ଷା କଲେ ମୁଁ ଅର୍ଥଦାନ କରିବା ପାଇଁ ଆଦେଶ ଦେଇ ମୋ ଶରୀରକୁ ଚାଲିଆସିବି । ରାଜା ପୁନର୍ବାର ମରିଶୋଇବେ । ତେବେ ସେ ପର୍ଯ୍ୟନ୍ତ ମୋର ମୃତ ଶରୀରକୁ ଅତ୍ୟନ୍ତ ସାବଧାନତାର ସହିତ ରକ୍ଷା କରିବାକୁ ହେବ ।''

ଅନ୍ୟ ଦୁଇବନ୍ଧୁ ଏକମତ ହେଲେ ।

ଏହାପରେ ଇନ୍ଦ୍ରଦତ୍ତ ସେହି ଭଙ୍ଗା ମନ୍ଦିର ମଧ୍ୟରେ ସମାଧି ଗ୍ରହଣ କଲେ । ତାଙ୍କ ଦେହରୁ ପ୍ରାଣ ଚାଲିଯାଇ ତେଣେ ରାଜପ୍ରାସାଦରେ ରାଜାଙ୍କ ମୃତ ଶରୀର ମଧ୍ୟରେ ପ୍ରବେଶ କଲା ।

ରାଣୀମାନେ କାନ୍ଦୁଥାଆନ୍ତି । ମନ୍ତ୍ରୀ, ବିରାଦର ଏବଂ ପାରିଷଦଗଣ ମନ ଦୁଃଖରେ ଆଲୋଚନା କରୁଥାଆନ୍ତି ଶବ ସତ୍କାର ବିଷୟରେ । ଏତିକିବେଳେ ରାଜା ଜୀଇଁ ଉଠିଲେ । ରାଜାଙ୍କର ଶବ ଜୀବନ ପାଇ ହଠାତ୍ ଉଠିବସିବାରୁ ସମସ୍ତେ ଚମକି ପଡ଼ିଲେ ।

ରାଜା ନିଦରୁ ଉଠିଲା ପରି ପଚାରିଲେ, ''ଏ କ'ଣ ! ମୋତେ ଘେରି କରି ସମସ୍ତେ କାନ୍ଦୁଛ କାହିଁକି ?''

ମନ୍ତ୍ରୀ ଅତ୍ୟନ୍ତ ସଙ୍କୋଚ ପ୍ରକାଶ କରି କହିଲେ, ''ମଣିମା ! ଆପଣ ମୃତ୍ୟୁବରଣ କରିଥିଲେ । ଦରବାରକୁ ଯିବା ବାଟରେ ଆପଣ ମୂର୍ଚ୍ଛାଯାଇ ଟଳିପଡ଼ିଲେ । କେତେ ଚିକିତ୍ସା କରାଗଲା । ଶେଷରେ ରାଜବୈଦ୍ୟ ଘୋଷଣା କଲେ ଯେ, ଆପଣଙ୍କର ଆତ୍ମାପୁରୁଷ ଉଡ଼ିଯାଇଛି ଚିରଦିନ ପାଇଁ ।''

ରାଜା କିଞ୍ଚିତ୍ କ୍ରୋଧ ପ୍ରକାଶ କରି କହିଲେ, ''ମଲା ମଣିଷ କ'ଣ କଥା କହେ ?''

ମନ୍ତ୍ରୀ ଏବଂ ସଭାସଦ୍‌ଗଣ ସମସ୍ୱରରେ ମଣିମାଙ୍କୁ କ୍ଷମା ମାଗିଲେ । ରାଣୀମାନେ ଆନନ୍ଦ ମନରେ ଅନ୍ତଃପୁରକୁ ଫେରିଗଲେ ।

ଏଣେ ରାଜା ଚାଲିଲେ ସମସ୍ତଙ୍କ ଗହଣରେ ଦରବାର କକ୍ଷକୁ । ସେତେବେଳକୁ ବରୁରୁଚି ଦରବାର ଗୃହରେ ରାଜଦର୍ଶନ ପାଇଁ ଅପେକ୍ଷା କରିଥାଆନ୍ତି ।

ରାଜା ସିଂହାସନରେ ବସିବା ମାତ୍ରକେ ବରୁରୁଚି ଶ୍ଳୋକ ବୋଲି ରାଜାଙ୍କୁ ପ୍ରାର୍ଥନା କଲେ, ''ମହାରାଜ ! ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରିବା ହେଉ । ତାହାହେଲେ ଦକ୍ଷିଣା ପ୍ରଦାନ କରି ଗୁରୁଙ୍କ ଋଣରୁ ମୁକ୍ତିଲାଭ କରିବୁ ।''

ରାଜା ଆଦେଶ ଦେଲେ, ''ତୁରନ୍ତ ଏ ଧନ ରାଜକୋଷରୁ ଅର୍ପଣ କରାଯାଉ ।''

ମନ୍ତ୍ରୀ ବଡ଼ ଅଡୁଆରେ ପଡ଼ିଲେ । ଏତେଗୁଡ଼ାଏ ସ୍ୱର୍ଣ୍ଣମୁଦ୍ରା ବିନା ବିଚାରରେ ରାଜା ଦେବାପାଇଁ କିପରି ଆଦେଶ ଦେଲେ ? ଅନୁଭୂତିରୁ ଜାଣନ୍ତି ଯେ, ରାଜା କେବେହେଲେ ଏପରି ବ୍ୟବହାର କରନ୍ତି ନାହିଁ । ଏଥିରେ କିଛି ରହସ୍ୟ ଅଛି ପରା ! କେହି ବିଜ୍ଞପୁରୁଷ ରାଜାଙ୍କ ମୃତ ଶରୀରରେ ପ୍ରବେଶ କରିନାହିଁ ତ !!

ମନ୍ତ୍ରୀ ଗୋପନରେ ତାଙ୍କର ଅଙ୍ଗରକ୍ଷୀମାନଙ୍କୁ ଆଦେଶ ଦେଲେ—''ତୁମେମାନେ ତୁରନ୍ତ ରାଜଧାନୀର ଅନ୍ଦିକନ୍ଦି ଅନୁସନ୍ଧାନ କର । ଯଦି କୌଣସିଠାରେ ଶବ ଦୃଷ୍ଟିଗୋଚର ହୁଏ, ତେବେ ସଙ୍ଗେ ସଙ୍ଗେ ଜାଳିଦେବାର ବ୍ୟବସ୍ଥା କର ।

ସୈନ୍ୟମାନେ ଘର ଘର ବୁଲି ଖୋଜିବାରେ ଲାଗିଲେ । ଶେଷରେ ନଅର ବାହାରେ ଗୋଟିଏ ଭଙ୍ଗା ଦେଉଳରେ ଦେଖିଲେ, ଇନ୍ଦ୍ରଦତ୍ତର ଶବ ପଡ଼ିରହିଛି । ତାକୁ ଜଗିକରି ମନଦୁଃଖରେ ବସିଛି ବ୍ୟାଡ଼ି । ବ୍ୟାଡ଼ିର କଥାରେ କିଏ କାହିଁକି କାନଦେବ, ସୈନ୍ୟମାନେ ଇନ୍ଦ୍ରଦତ୍ତର ଶବକୁ ବଳାତ୍କାର ପୂର୍ବକ ପୋଡ଼ି ପକାଇଲେ ।

ପରଦିନ ସକାଳେ ବ୍ୟାଡ଼ି କାନ୍ଦି କାନ୍ଦି ରାଜଦରବାରରେ ଫେରାଦ ହେଲା । ରାଜାଙ୍କୁ କହିଲା, ''ମହାରାଜ ! ମୋର ଜଣେ ବନ୍ଧୁ ଯୋଗବଳରେ ସମାଧି ଗ୍ରହଣ କରିଥିଲେ । ଆପଣଙ୍କ ମନ୍ତ୍ରୀଙ୍କ ଆଦେଶରେ ସୈନ୍ୟମାନେ ତାଙ୍କୁ ପୋଡ଼ି ପକାଇଲେ । ମୁଁ ଯେତେ ପ୍ରାର୍ଥନା କଲେ ମଧ୍ୟ କେହି ଶୁଣିଲେ ନାହିଁ । ଆପଣଙ୍କ ମନ୍ତ୍ରୀଙ୍କ ଯୋଗୁ ରାଜ୍ୟରେ ବ୍ରହ୍ମହତ୍ୟା ଦୋଷ ଲାଗିଲା ।

ଏକଥା ଶୁଣି ଇନ୍ଦ୍ରଦତ୍ତ ମନେ ମନେ ଶିହରି ଉଠିଲେ । କିନ୍ତୁ ଆଉ କ'ଣ ଉପାୟ ଅଛି ? ରାଜା ମନ୍ତ୍ରୀଙ୍କୁ ଲକ୍ଷ୍ୟ କରି କହିଲେ, ''ମୋତେ ନ ଜଣାଇ ତୁମେ ଏପରି ଆଦେଶ କାହିଁକି ଦେଲ ?''

ମନ୍ତ୍ରୀ କହିଲେ, ''ମହାରାଜ ! ରାଜ୍ୟରେ ଅନେକ ଅଘଟଣ କଥା ଘଟିଯାଉଥିଲା । ବିଚାରିଲି, ଏହା ନିଶ୍ଚୟ କୌଣସି ତନ୍ତ୍ର ସାଧକର କାର୍ଯ୍ୟ । ତାର କାରସାଦି ବନ୍ଦ କରିବା ପାଇଁ ଏପରି ଆଦେଶ ଦେବାକୁ ବାଧ ହୋଇଥିଲି ।''

ରାଜା କହିଲେ, ''ତୁମର ଅବିବେକିତା ଯୋଗୁ ବ୍ରହ୍ମହତ୍ୟା ହେଲା ।''

ମନ୍ତ୍ରୀ କହିଲେ, ''ମହାରାଜ ! ବ୍ୟସ୍ତ ହୁଅନ୍ତୁ ନାହିଁ । ଆବଶ୍ୟକ ହେଲେ ପ୍ରାୟଶ୍ଚିତ୍ତ କରାଯାଇପାରେ । ଆପଣ ଇଚ୍ଛା କଲେ ଏହି ବ୍ରାହ୍ମଣଙ୍କୁ କିଛି କ୍ଷତିପୂରଣ ଦେଇପାରନ୍ତି ।''

ରାଜା ବ୍ୟାଡ଼ି ନିକଟକୁ ଆସି ସାନ୍ତ୍ୱନା ଦେବା ଛଳରେ ଧୀରେ ଧୀରେ କହିଲେ, ''ମୋତେ ଆମରଣ ଏହି ଶୂଦ୍ର ରାଜାର ଦେହରେ ରହିବାକୁ ପଡ଼ିବ ।''

ବ୍ୟାଡ଼ି କହିଲା—''ସାବଧାନ ଭାଇ ! ତୁମେ ମନ୍ତ୍ରୀ ସକଟାର ନିକଟରେ ଧରାପଡ଼ି ଯାଇଛ । ତୁମେ ବରୁରୁଚିକୁ ମନ୍ତ୍ରୀ ଭାବରେ ନିଯୁକ୍ତି ଦିଅ । ସେହି କେବଳ ସକଟାର ବୁଦ୍ଧି ସହିତ ଟକ୍କର ଦେଇପାରିବ ।''

ରାଜା କହିଲେ, ''ଠିକ୍ ଅଛି । ତୁମେ ଦୁହେଁ ଆଗ ଯାଇ ଗୁରୁଦକ୍ଷିଣା ଦେଇ ଫେରିଆସ । ତା'ପରେ ଯାହା ବିଚାର କରିବା ।''

ଗୁରୁଦକ୍ଷିଣା ଦେଇ ବରୁରୁଚି ଓ ବ୍ୟାଡ଼ି ରାଜଧାନୀକୁ ଫେରିଆସିଲେ ।

ଏଣେ ରାଜା ମନ୍ତ୍ରୀ ସକଟାର ଏବଂ ତାଙ୍କର ଶହେ ପୁଅକୁ ଜେଲଖାନାରେ ବନ୍ଦୀ କରି ରଖିଲେ । ବରୁରୁଚିଙ୍କୁ ମନ୍ତ୍ରୀ ପଦରେ ବରଣ କରାଗଲା । ବ୍ୟାଡ଼ି କୌଣସି ରାଜପଦ ଗ୍ରହଣ ନ କରି ତୀର୍ଥ କରି ବାହାରିଗଲେ ।

ରାଜା ଯୋଗାନନ୍ଦଙ୍କ ଶରୀରରେ ବନ୍ଦୀ ଇନ୍ଦ୍ରଦତ୍ତଙ୍କର ସବୁ ରାଗ ମନ୍ତ୍ରୀ ସକଟାର ଉପରେ । ସେ ଏପରି ବ୍ୟବସ୍ଥା କଲେ, ଯେପରି ସକଟାର ଏବଂ ତାଙ୍କର ଶହେପୁଅ ଧୀରେ ଧୀରେ ଜେଲ ଭିତରେ ମୃତ୍ୟୁବରଣ କରିବେ ।

ସକଟାର ଥିଲେ ଅତ୍ୟନ୍ତ ବୁଦ୍ଧିମାନ । ପୁଅମାନେ ତାଙ୍କୁ ବୁଝାଇଲେ, ''ବାବା ! ଦୁଷ୍ଟବୁଦ୍ଧି ରାଜା ଆମ୍ଭମାନଙ୍କୁ ସବଂଶ ମାରିବାକୁ ବସିଛି । ଆପଣ ବଞ୍ଚିରହନ୍ତୁ ଏବଂ ଏପରି ଅନ୍ୟାୟର ପ୍ରତିଶୋଧ ନିଅନ୍ତୁ ।''

ଏଣିକି ପିଲାମାନେ ଆଉ କେହି ଖାଦ୍ୟ ନ ଖାଇ ବାବା ବଞ୍ଚିବା ପାଇଁ ସାଇତି ରଖିଲେ ।

ଯୋଗାନନ୍ଦରୂପୀ ଇନ୍ଦ୍ରଦତ୍ତ ତେଣେ ଭୋଗବିଳାସରେ ମାତିରହିଲେ । ମନ୍ତ୍ରୀ ବରୁରୁଚି ବନ୍ଧୁଙ୍କୁ ସୁଧାରିବା ପାଇଁ କୌଣସି ଉପାୟ ଖୋଜି ପାଇଲେ ନାହିଁ । ଦିନେ

ବରୁରୁଚି ରାଜାଙ୍କୁ କହିଲେ, ‘‘ବନ୍ଧୁ ଇନ୍ଦ୍ରଦତ୍ତ ! ତୁମର ଆଜିର ଏ ସୌଭାଗ୍ୟ ପାଇଁ ସକଟାର ଦାୟୀ । ଅଥଚ ତୁମେ ତାର ସନ୍ତାନମାନଙ୍କୁ ନିଷ୍ଠୁର ଭାବରେ ହତ୍ୟା କଲ । ସେ ମଧ୍ୟ ଜେଲଖାନାରେ ସଢୁଛନ୍ତି । ତାଙ୍କୁ ରାଜ୍ୟର ସବୁ ହାଲ୍‌ଚାଲ୍ ଜଣାଅଛି । ମୋ ବିଚାରରେ ତୁମେ ତାଙ୍କୁ ଅନ୍ୟାୟରେ ଦଣ୍ଡ ଦେଇଛ । ତାଙ୍କୁ ଜେଲ୍‌ରୁ ମୁକୁଳେଇ ମନ୍ତ୍ରୀ ପଦରେ ନିଯୁକ୍ତ କରିଦିଅ । ତାହାହେଲେ ରାଜ୍ୟର ମଙ୍ଗଳ ହେବ ।’’

ରାଜା କହିଲେ, ‘‘ତୁମେ ଯାହା ଭଲ ଭାବୁଛ କର ।’’

ବରୁରୁଚି ମନ୍ତ୍ରୀ ସକଟାରଙ୍କୁ ଜେଲଖାନାରୁ ଖଲାସ କରିଆଣିଲେ । ତାଙ୍କୁ ସସମ୍ମାନ ମନ୍ତ୍ରୀପଦରେ ନିଯୁକ୍ତ କରାଗଲା ।

ସକଟାର ଅନୁଭବ କଲେ, ଏହା ବରୁରୁଚିଙ୍କର କୂଟବୁଦ୍ଧି । ସେ ମନରେ କୌଣସି ପ୍ରକାର ଅସନ୍ତୋଷ ପ୍ରକାଶ ନ କରି ନୀରବରେ କାମ କରିବାକୁ ଲାଗିଲେ । ସେ ଜାଣିଥିଲେ ଯେ, ବରୁରୁଚି ଥିବାଯାଏ ରାଜାଙ୍କର କେହି କୌଣସି କ୍ଷତି କରିପାରିବେ ନାହିଁ ।

ଭୋଗବିଳାସରେ ଯୋଗାନନ୍ଦବେଶୀ ଇନ୍ଦ୍ରଦତ୍ତ ରାତିଦିନ ବୁଡ଼ିରହିଲେ । ତାଙ୍କର ରାଜ୍ୟ ଓ ଶାସନ ପ୍ରତି ଆଦୌ ମନ ରହିଲା ନାହିଁ । ବରୁରୁଚି ବନ୍ଧୁ ଭାବରେ ପଦେ ପଦେ ବାଧା ଦେଉଥିଲେ ଅଥବା ସାବଧାନ କରିଦେଉଥିଲେ । ଏଥିରେ ରାଜା ଭୟଙ୍କର ତାତି ଉଠିଲେ । ସେ ଭାବିଲେ, ମନ୍ତ୍ରୀ ହେବାରୁ ବରୁରୁଚିର ଅହଙ୍କାର ବଢ଼ିଯାଇଛି । ତାଙ୍କୁ ଉଚିତ ଶାସ୍ତି ଦେବାକୁ ହେବ ।

ରାଜା ଗୋପନରେ ମନ୍ତ୍ରୀ ସକଟାରଙ୍କୁ ଡକାଇ ପଠାଇଲେ ଏବଂ ଆଦେଶ ଦେଲେ, ‘‘ତୁମେ ବରୁରୁଚିକୁ ଗୋପନରେ ହତ୍ୟା କର । ଯେପରି କେହି ଜାଣିପାରିବେ ନାହିଁ ।’’

ବରୁରୁଚିଙ୍କ ପ୍ରତି ମନ୍ତ୍ରୀ ସକଟାର ଥିଲେ କୃତଜ୍ଞ । ତାଙ୍କରି ଚେଷ୍ଟାରେ ସେ ଜେଲଖାନାର ମରଣ ଯନ୍ତ୍ରଣାରୁ ଉଦ୍ଧାର ପାଇଛନ୍ତି । ତେଣୁ ବରୁରୁଚିଙ୍କୁ ସବୁକଥା କହି ନିଜ ଘରେ ଆତ୍ମଗୋପନ କରି ରହିବାର ବ୍ୟବସ୍ଥା କରିଦେଲେ । ରାଜାଙ୍କୁ ବୁଝାଇଦେଲେ ଯେ ରାଜାଦେଶ ପାଳନ କରାଯାଉଛି ।

ଏଇମିତି କିଛିଦିନ ଚାଲିଗଲା । ବରୁରୁଚିଙ୍କୁ ଆତ୍ମଗୋପନ କରି ବସି ରହିବାକୁ ଭଲ ଲାଗୁ ନ ଥାଏ । ସକଟାର ତାଙ୍କୁ ଧୈର୍ଯ୍ୟ ଧରି ରହିବା ପାଇଁ ବୁଝାଉଥାଆନ୍ତି ।

ଦିନକର କଥା । ରାଜାଙ୍କର ଜଣେ ପୁଅ ହିରଣ୍ୟଗୁପ୍ତ ବଣକୁ ଯାଇଥିଲେ ଶିକାର କରିବାପାଇଁ । ମାତ୍ର ତେଣୁ ଫେରିଆସିଲେ ପାଗଳ ହୋଇ । ରାଜ୍ୟର କେତେ କବିରାଜ ଚିକିତ୍ସା କଲେ । ହେଲେ କିଛି ଉପକାର ମିଳିଲା ନାହିଁ ।

ରାଜା ଦିନେ ଅନୁତାପ କରି କହିଲେ, ''କେଉଁ କୁକ୍ଷଣରେ ବରୁରୁଚିଙ୍କୁ ହତ୍ୟା କରିବା ପାଇଁ ଆଦେଶ ଦେଲି । ସେ ବଞ୍ଚିଥିଲେ ପୁଅକୁ ଭଲ କରି ଦେଇଥାଆନ୍ତେ ।''

ସକଟାର ବିନୀତ ଭାବରେ କହିଲେ, ''ମହାରାଜ ! ଯଦି ଆପଣଙ୍କ ଆଦେଶ ପାଳନ ନ କରି ବରୁରୁଚିଙ୍କୁ ଜୀବିତ ରଖିଥାଆନ୍ତି, ତେବେ ଆପଣ କ'ଣ ମୋତେ କ୍ଷମା ଦେଇଥାଆନ୍ତେ ?''

ରାଜା କହିଲେ, ''ନା, ନା ! ତା' ନୁହେଁ । ମୋର ସେତେବେଳେ ଦୁର୍ବୁଦ୍ଧି ଘଟିଥିଲା । ବରୁରୁଚି ବଞ୍ଚିଥିଲେ ତୁମକୁ ପୁରସ୍କାର ବ୍ୟବସ୍ଥା କରିଥାଆନ୍ତି ।''

ମନ୍ତ୍ରୀ ସକଟାର କହିଲେ, ''ତେବେ ମହାରାଜ ! ମୋତେ କ୍ଷମା କରନ୍ତୁ । ମୁଁ ଆପଣଙ୍କର ଆଦେଶ ପାଳନ କରିନାହିଁ । ମୁଁ ଜାଣିଥିଲି ଯେ, ବରୁରୁଚିଙ୍କୁ ନିଧନ ଆଦେଶ ଆପଣଙ୍କର ଅନ୍ତରର ବାଣୀ ନ ଥିଲା ।''

ମହାରାଜା ଏତେ ଖୁସି ହୋଇଗଲେ ଯେ, ମନ୍ତ୍ରୀ ସକଟାରଙ୍କୁ କୁଣ୍ଢାଇ ପକାଇଲେ । କହିଲେ, ''ବନ୍ଧୁ ବରୁରୁଚିଙ୍କୁ ସସମ୍ମାନ ନେଇଆସ ।''

ବରୁରୁଚି ଆସି ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେବାମାତ୍ରକେ ରାଜାରୂପୀ ଇନ୍ଦ୍ରଦତ୍ତ କ୍ଷମା ମାଗିଲେ । ଅତ୍ୟନ୍ତ ବିକଳ ହୋଇ କହିଲେ, ''ବନ୍ଧୁ ! ମୋର ପୁତ୍ରକୁ ଆରୋଗ୍ୟ କରିଦିଅ ।''

ବରୁରୁଚି କହିଲେ, ''ମନ୍ତ୍ର ବଳରେ ମୁଁ ଜାଣିପାରୁଛି ଯେ, ପୁତ୍ର ହିରଣ୍ୟଗୁପ୍ତ ତା'ର ବନ୍ଧୁ ପ୍ରତି ବିଶ୍ୱାସଘାତକତା କରି ତାର ଶାପ୍ୟ ଯୋଗୁ ଏପରି ଅବସ୍ଥା ହୋଇଛି । ମୋର ମନ୍ତ୍ରଶକ୍ତି ବଳରେ ସେ ଅର୍ଦ୍ଧାଧିକ ଆରୋଗ୍ୟ ହୋଇଗଲାଣି । ଏଣିକି ସେ ତାର ବନ୍ଧୁ ପ୍ରତି ଅବିଶ୍ୱାସ ଆଚରଣର କାହାଣୀ କହିଲେ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଯିବ ।''

ହିରଣ୍ୟଗୁପ୍ତର ସବୁକଥା ମନେ ପଡ଼ିଗଲା । ସେ କହିବାକୁ ଲାଗିଲା—''ହଁ ଦିନେ ବଣରେ ଶିକାର କରି ବୁଲୁଥିଲି । ହଠାତ୍ ସିଂହ ମାଡ଼ିଆସିବାରୁ ଭୟରେ ଗୋଟିଏ ଗଛ ଡାଳରେ ଆଶ୍ରୟ ନେଲି । ଠିକ୍ ସେତିକିବେଳେ ଭାଲୁଟାଏ ମଧ୍ୟ ଜୀବନରକ୍ଷା ପାଇଁ ସେଇ ଗଛରେ ଚଢ଼ି ମୋରି ପାଖରେ ବସିଲା । ମହରଗରୁ ଯାଇ କାନ୍ତାରରେ ପଡ଼ିବା କଥା । ସିଂହ ହାବୁଡ଼ରୁ ଯାଇ ଭାଲୁ କବଳରେ ପଡ଼ିଲି । ମୁଁ ଖାଲି ଭୟରେ ଥରୁଥାଏ । ଭାଲୁ ମୋତେ କହିଲା, ''ରାଜପୁତ୍ର ! ତୁମେ ଡର ନାହିଁ । ଆମ ଉଭୟଙ୍କୁ ସମାନ ବିପଦ । ବର୍ତ୍ତମାନ ଆମେ ପରସ୍ପରର ବନ୍ଧୁ ହେଲେ । ତୁମେ ନିର୍ଭୟରେ ମୋ ପାଖରେ ବସିରହ ।''

ରାତି ଅଧବେଳକୁ ମୋତେ ନିଦ ଲାଗିଲା । କିନ୍ତୁ ମୁଁ କ'ଣ କରିବି !! ତଳେ ସିଂହ ଅପେକ୍ଷା କରି ବସିଛି । ନିଦ ବାଉଳାରେ ପଡ଼ିଗଲେ ପ୍ରାଣଯିବ, ନଚେତ୍ ସିଂହର

ଖାଦ୍ୟ ହେବି । ମୋର ଦୁଃଖ ଜାଣି ଭାଲୁ କହିଲା, "ବନ୍ଧୁ, ତୁମେ ନିଶ୍ଚିନ୍ତରେ ମୋର କୋଳରେ ମୁଣ୍ଡରଖି ଶୋଇଯାଅ । ମୁଁ ତୁମକୁ ଜଗିଛି ।"

ବାସ୍ ! ତାପରେ ମୁଁ ଶୋଇଗଲି । ପରେ ଶୁଣିଲି, ସିଂହ କୁଆଡ଼େ ଭାଲୁକୁ ପରାମର୍ଶ ଦେଲା, ମୋତେ ତଳକୁ ପେଲିଦେବା ପାଇଁ । ସିଂହ କହିଲା—"ମଣିଷକୁ ଖାଇ ମୁଁ ଚାଲିଯିବି । ତୁ ନିଶ୍ଚିନ୍ତରେ ସକାଳୁ ଓହ୍ଲାଇ ଚାଲିଯିବୁ ।"

ବନ୍ଧୁ ପ୍ରତି ଅବିଶ୍ୱାସ କରିବ ନାହିଁ ବୋଲି ଭାଲୁ ସିଂହ କଥାରେ ରାଜି ହେଲାନାହିଁ ।

କେତେ ସମୟ ପରେ ମୋର ନିଦ ଭାଙ୍ଗିଗଲା । ଭାଲୁ କହିଲା, "ବନ୍ଧୁ ! ଏଥର ମୋର ପାଳି । ମୁଁ ଟିକିଏ ଶୋଇପଡୁଛି । ତୁମେ ଜଗିକରି ବସ ।" ଭାଲୁର ତ' ବଡ଼ ବଡ଼ ନଖ । ସେ ଗଛଡାଳରେ ନଖ ପୋତି ଶୋଇଗଲା ।

ଏହି ସମୟରେ ଗଛ ତଳୁ ସିଂହ ମୋତେ କହିଲା, "ହେ ମଣିଷ ! ଭାଲୁକୁ ବିଶ୍ୱାସ ନାହିଁ । ତାକୁ ପେଲିଦେଲେ ମୁଁ ଖାଇକରି ଚାଲିଯିବି । ନଚେତ୍ ମୁଁ ଚାଲିଗଲେ ସେ ତୋତେ ଖାଇବ ।"

କାହିଁକି କେଜାଣି ସିଂହ କଥାରେ ମୁଁ ବିଶ୍ୱାସ କରିଗଲି । ଭାଲୁକୁ ପେଲିଦେଲି । ମାତ୍ର ଗଛଡାଳରେ ନଖ ଫୁଟାଇ ରଖିଥିବାରୁ ସେ ପଡ଼ିଲା ନାହିଁ । ସେ ମୋତେ ଅଭିଶାପ ଦେଇ ଚାଲିଗଲା—"ବନ୍ଧୁ ପ୍ରତି ଅବିଶ୍ୱାସ ଆଚରଣ କରିବାରୁ ପାଗଳ ହୋଇଯିବୁ । ଯେତେବେଳେ ତୋର ଅବିଶ୍ୱାସର କାହାଣୀ ଅନ୍ୟମାନଙ୍କ ଆଗରେ କହିବୁ, ସେତେବେଳେ ଭଲ ହୋଇଯିବୁ ।"

ରାଜପୁତ୍ର ହିରଣ୍ୟଗୁପ୍ତ ସୁସ୍ଥ ହୋଇଗଲେ । ଏଣିକି ବରୁରୁଚି ସେ ରାଜ୍ୟରେ ଆଉ ରହିବାକୁ ଇଚ୍ଛା କଲେ ନାହିଁ । ସହପାଠୀ ହୋଇ ମଧ ସେ ବନ୍ଧୁ ଆଦେଶରେ ନିଧନ ହେବାକୁ ଯାଉଥିଲା । ସେ ତୀର୍ଥ କରି ବାହାରିଗଲା ।

ବରୁରୁଚି ଚାଲିଗଲା ପରେ ରାଜା ଯୋଗାନନ୍ଦ ଏକୁଟିଆ ରହିଗଲେ । ମନ୍ତ୍ରୀ ସକଟାର ଭାବିଲେ, ପ୍ରତିଶୋଧ ନେବାର ଏହା ହେଉଛି ଅପୂର୍ବ ସୁଯୋଗ । ମାତ୍ର ନେବେ କେଉଁ ଉପାୟରେ ?

ପ୍ରକୃତ ଯୋଗାନନ୍ଦଙ୍କ ପୁଅ ଚନ୍ଦ୍ରଗୁପ୍ତ ଛଦ୍ମବେଶୀ ଯୋଗାନନ୍ଦଙ୍କ ଭୟରେ ରାଜ୍ୟ ବାହାରେ କାଳ କାଟୁଛନ୍ତି । ତାଙ୍କୁ କୌଣସି ଉପାୟରେ ସିଂହାସନରେ ବସାଇବାକୁ ହେବ । କାରଣ ଏହି ସିଂହାସନର ପ୍ରକୃତ ଉତ୍ତରାଧିକାରୀ ହେଉଛନ୍ତି ଚନ୍ଦ୍ରଗୁପ୍ତ ।

ଦିନେ ରାସ୍ତାରେ ଯାଉ ଯାଉ ସକଟାର ଦେଖିଲେ, ଜଣେ ବ୍ରାହ୍ମଣ ରାସ୍ତା କଡ଼ରେ କୁଶ ମୂଳ ଉପାଡ଼ିବାରେ ବ୍ୟସ୍ତ । ସକଟାରଙ୍କ ଆଗ୍ରହ ବଢ଼ିଲା । ସେ ପାଖକୁ ଯାଇ ପଚାରିଲେ, "ହେ ବ୍ରାହ୍ମଣ ! ରାସ୍ତାରେ ଏ କୁଶମୂଳ ଉପାଡୁଛ କାହିଁକି ?" ସେଇ

ବ୍ରାହ୍ମଣଙ୍କ ନାମ ଚାଣକ୍ୟ । ସେ ଉତ୍ତର ଦେଲେ, "ଉପାଡ଼ିବି ନାହିଁ କାହିଁକି ? କୁଶଘାସ ମୋ ପାଦରେ କଣ୍ଟା ପରି ଫୁଟିଯାଉଛି । ଏହି ଅଞ୍ଚଳକୁ କୁଶଶୂନ୍ୟ କରିବି ।"

ସକଟାର ଆଳାପ କରି ଜାଣିଲେ, ବ୍ରାହ୍ମଣ ଚାଣକ୍ୟ କେବଳ ପଣ୍ଡିତ ନୁହଁନ୍ତି, ଜଣେ ଦୃଢ଼ପ୍ରତିଜ୍ଞ ଏବଂ କ୍ରୋଧୀ ବ୍ୟକ୍ତି । ଯୋଗାନନ୍ଦଙ୍କୁ ନିପାତ କରିବା ପାଇଁ ଏହି ବ୍ରାହ୍ମଣ ଉପଯୁକ୍ତ ସହାୟକ ହେବେ ।

ଏହି ସମୟରେ ରାଜାଙ୍କ ପ୍ରାସାଦରେ ଶ୍ରାଦ୍ଧ ଉତ୍ସବ ହେଉଥାଏ । ସକଟାର ଚାଣକ୍ୟଙ୍କୁ ନିମନ୍ତ୍ରଣ କଲେ ପ୍ରଧାନ ଅତିଥି ହେବା ପାଇଁ ।

ମନ୍ତ୍ରୀଙ୍କ ପରାମର୍ଶ ଅନୁସାରେ ଯୋଗାନନ୍ଦ ଚାଣକ୍ୟଙ୍କୁ ବରଣ କରିନେଲେ । ଏଣେ କୌଶଳ କ୍ରମେ ସକଟାର ଅନ୍ୟ କାର୍ଯ୍ୟ ଛଳରେ ରାଜଧାନୀର ବାହାରକୁ ଚାଲିଗଲେ । ଶ୍ରାଦ୍ଧଦିନ ଚାଣକ୍ୟ ପ୍ରଧାନ ଅତିଥି ଆସନରେ ବସିଥାଆନ୍ତି । ଅଥଚ ରାଜପୁତ୍ର ରାଜପୁରୋହିତଙ୍କୁ ପ୍ରଧାନ ଅତିଥି ଭାବରେ ବରଣ କରି ଆଣିଥାଆନ୍ତି ।

ରାଜପୁରୋହିତ ଏବଂ ଚାଣକ୍ୟଙ୍କ ମଧ୍ୟରେ ବିବାଦ ହେଲା । ରାଜପୁତ୍ର ଚୁଟିଧରି ଚାଣକ୍ୟଙ୍କୁ ବାହାର କରିଦେଲେ ।

ଅପମାନିତ ଚାଣକ୍ୟ ଶପଥ ନେଲେ । ଏହି ଅପମାନର ପ୍ରତିଶୋଧ ନ ନେଲା ପର୍ଯ୍ୟନ୍ତ ଚୁଟି ବନ୍ଧାଯିବ ନାହିଁ । ତେଣେ ମନ୍ତ୍ରୀ ସକଟାର ଚନ୍ଦ୍ରଗୁପ୍ତଙ୍କୁ ଡାକି ଆଣି ନିଜ ଘରେ ମନ୍ତ୍ରଣା କରୁଥାଆନ୍ତି । ଏତିକିବେଳେ ଚାଣକ୍ୟ ଯାଇ ସେଠାରେ ପହଞ୍ଚିଲେ । ଚାଣକ୍ୟଙ୍କୁ ଚନ୍ଦ୍ରଗୁପ୍ତ ପ୍ରଣାମ କଲେ ।

ସକଟାର ପଚାରିଲେ, "ତମେ କ'ଣ ଏହି ବ୍ରାହ୍ମଣଙ୍କୁ ଜାଣ ?" ଚନ୍ଦ୍ରଗୁପ୍ତ କହିଲେ, "ଚାଣକ୍ୟ ମୋର ଗୁରୁଦେବ । ମୁଁ ତାଙ୍କର ଆଦେଶକୁ ଅପେକ୍ଷା କରିଛି ।"

ସକଟାର ସୁଖୀ ହେଲେ । ଉଭୟଙ୍କର ଲକ୍ଷ୍ୟ ତାହାହେଲେ ଏକ । ଚାଣକ୍ୟଙ୍କ ପରାମର୍ଶରେ ଚନ୍ଦ୍ରଗୁପ୍ତ ଯୋଗାନନ୍ଦଙ୍କ ପ୍ରାସାଦକୁ ଆକ୍ରମଣ କଲେ ।

ପ୍ରଜାଗଣ ଓ ପାରିଷଦମାନେ ଛଦ୍ମବେଶୀ ରାଜାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ । ସେମାନେ ଚନ୍ଦ୍ରଗୁପ୍ତଙ୍କୁ ସ୍ୱାଗତ କଲେ । ରାଜଧାନୀ ଅଧିକାର କରି ଚନ୍ଦ୍ରଗୁପ୍ତ ଯୋଗାନନ୍ଦ ଏବଂ ତାଙ୍କର ସନ୍ତାନମାନଙ୍କୁ ଜେଲଖାନାରେ ବନ୍ଦୀ କଲେ ।

ଚନ୍ଦ୍ରଗୁପ୍ତ ରାଜା ହୋଇ ରାଜ୍ୟ ପରିଚାଳନା କଲେ ।

ମନ୍ତ୍ରୀ ସକଟାରଙ୍କ ଉଦ୍ଦେଶ୍ୟ ପୂର୍ଣ୍ଣ ହେଲା । ସେ ତୀର୍ଥ କରି ବାହାରିଗଲେ ।



# ଦୁଇ ରାଣୀଙ୍କ କାହାଣୀ



ପୂର୍ବ କାଳର କଥା । ଇରାବତୀ ନାମରେ ରାଜ୍ୟଟିଏ ଥିଲା । ସେହିଠାରେ ରାଜୁତି କରୁଥାଆନ୍ତି ରାଜା ପରିତ୍ୟାଗସେନ । ପ୍ରଜାମାନେ ସୁଖରେ ଥାଆନ୍ତି । ରାଜା ଥିଲେ ପ୍ରବଳ ପ୍ରତାପୀ । ତେଣୁ ପାଖପଡ଼ୋଶୀ ରାଜାମାନେ ସାହସ କରୁ ନ ଥିଲେ ତାଙ୍କ ସହିତ ଶତ୍ରୁତା କରିବା ପାଇଁ । ରାଜାଙ୍କର ଦୁଇରାଣୀ । ବଡ଼ରାଣୀ ମନୋରମା ଏବଂ ସାନରାଣୀ କାବ୍ୟାଳଙ୍କାରା । ଦୁଇରାଣୀ ରୂପରେ ଗୁଣରେ ଖୁବ୍ ସୁନ୍ଦରୀ । ସେମାନେ ମନଦେଇ ରାଜାଙ୍କୁ ସେବା କରୁଥାଆନ୍ତି ।

ଏତେ ସୁଖ ମଧ୍ୟରେ ରାଜାରାଣୀଙ୍କ ମନରେ ଆଦୌ ଶାନ୍ତି ନ ଥାଏ । କାହିଁକି ନା ରାଜାଙ୍କର କୁଳ ଉଜ୍ଜ୍ୱଳ କରିବା ପାଇଁ ସନ୍ତାନଟିଏ ନାହିଁ । ଦୁଇରାଣୀ କେତେ ବ୍ରତ, ଉପବାସ କରୁଥାଆନ୍ତି । ରାଜାଙ୍କର ମନରେ ସବୁବେଳେ ଦୁଃଖ । ଏତେବଡ଼ ରାଜ୍ୟର ଉତ୍ତରାଧିକାରୀ କିଏ ହେବ ? ରାଜ୍ୟର ଶାସନଭାର କାହାକୁ ଦେଇ ସେ ଶାନ୍ତିରେ ଆଖି ବୁଜିବେ ?

ରାଜା ଥିଲେ ଚଣ୍ଡୀଙ୍କର ଭକ୍ତ । ପ୍ରତିଦିନ ଚଣ୍ଡୀଙ୍କର ପୂଜା ନ କଲେ ରାଜା ଶାନ୍ତି ପାଉ ନ ଥିଲେ । ଅତି ବିକଳ ହୋଇ ରାଜା ଚଣ୍ଡୀଙ୍କୁ ପ୍ରାର୍ଥନା କରନ୍ତି କୋଳରେ ସନ୍ତାନଟିଏ ଦେବାପାଇଁ । ଦିନେ ରାଜା ଚଣ୍ଡୀଙ୍କ ମନ୍ଦିରରେ ଅଧିଆ ପଡ଼ିଥିଲେ । ଅଖିଆ ଅପିଆ ଚଣ୍ଡୀଙ୍କର ଆସନ ଟଳିଲା । ସେ ରାଜାଙ୍କୁ ସ୍ୱପ୍ନରେ ସାକ୍ଷାତ ଦେଇ କହିଲେ, "ବତ୍ସ ! ଏ ଦୁଇଟି ଫଳ ଦୁଇ ରାଣୀଙ୍କୁ ଦେବୁ । ସେମାନେ ଯଥା ସମୟରେ ସନ୍ତାନବତୀ ହେବେ ।"

ରାଜାଙ୍କର ନିଦ ଭାଙ୍ଗିଗଲା । ସେ ଦେଖିଲେ, ସତକୁ ସତ ତାଙ୍କ ପାଖରେ ଦୁଇଟି ଫଳ ଥୁଆ ହୋଇଛି । ସେ କୃତକୃତ୍ୟ ହୋଇ ଚଣ୍ଡୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ ।

ରାଜା ଫେରିଆସିଲେ ନଅରକୁ । ଦୁଇରାଣୀଙ୍କୁ ପାଖକୁ ଡାକି ସ୍ୱପ୍ନ ବୃତ୍ତାନ୍ତ କହିଲେ । ସେମାନଙ୍କର ଆନନ୍ଦ ଦେଖେ କିଏ ? ବ୍ୟାକୁଳ ହେଲେ ଦେବୀଙ୍କର ଫଳ ଲାଭ କରିବା ପାଇଁ । ରାଜା ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲେ, "ବ୍ୟସ୍ତ ହୁଅନାହିଁ । ଠିକ୍ ସମୟରେ ତୁମ ପାଖରେ ଫଳଟି ପହଞ୍ଚିବ ।"

ରାଜା ପ୍ରଥମଦିନ ବଡ଼ରାଣୀଙ୍କ ମହଲରେ ବିଶ୍ରାମ କଲେ । ତାଙ୍କୁ କହିଲେ, "ତୁମେ ସ୍ନାନ ସାରି ଠାକୁରାଣୀଙ୍କୁ ପୂଜା କରିବା ପରେ ଫଳଟି ଗ୍ରହଣ କରିବ ।"

ବଡ଼ରାଣୀ ସେହି ଅନୁସାରେ ଫଳଟି ଆଣି ଖାଇଦେଲେ । ଆର ଫଳଟି ରାଜା ତକିଆ ତଳେ ଥୋଇ ଶୋଇପଡ଼ିଲେ । ବଡ଼ରାଣୀ ମନୋରମା ତାହା ଲକ୍ଷ୍ୟ କରିଥିଲେ । ହଠାତ୍ ତାଙ୍କ ମନରେ ସାନରାଣୀ ପ୍ରତି ଈର୍ଷା ହେଲା । ସେ ବିଚାରିଲେ, "ଆର ଫଳଟି ସେ ଖାଇଦେଲେ ତାଙ୍କର ଦୁଇଟି ସନ୍ତାନ ଆସିବେ । ସେ ହେବେ ରାଜାଙ୍କର ଅତ୍ୟନ୍ତ ପ୍ରିୟ । ପୁଅ ନ ହେଲେ ସାନରାଣୀଙ୍କୁ କେହି ପଚାରିବେ ନାହିଁ ।"

ସତକୁ ସତ ମନୋରମା ରାଜାଙ୍କ ତକିଆତଳୁ ଫଳଟି ଆଣି ଖାଇଦେଲେ ।

ସକାଳୁ ଉଠି ରାଜା ଯେତେବେଳେ ସାନରାଣୀଙ୍କ ମହଲକୁ ବାହାରିଲେ, ତକିଆତଳୁ ଫଳଟି ଖୋଜିଲେ । ଫଳଟି କାହିଁ ବୋଲି ବଡ଼ରାଣୀଙ୍କୁ ରାଜା ପଚାରିଲେ । ବଡ଼ରାଣୀ ମନରେ ହସ ଫୁଟାଇ ଉତ୍ତର ଦେଲେ, "ମହାରାଜ ! ଫଳଟି ଭାରି ସୁଆଦ ଲାଗିଲା । ତେଣୁ ଆର ଫଳଟି ଖାଇଦେଲି ।"

ରାଜାଙ୍କର ମନଟି ଶୁଖିଗଲା । ଅତ୍ୟନ୍ତ ଦୁଃଖରେ ସେ ଭାଙ୍ଗିପଡ଼ିଲେ । ସାନରାଣୀଙ୍କୁ ଏବେ କି ଜବାବ ଦେବେ !! ବଡ଼ରାଣୀ ମନୋରମାଙ୍କ ହୃଦୟରେ ଏତେ କପଟତା ଅଛି ବୋଲି ସେ ଅବା କିପରି ଅନୁମାନ କରିବେ !!

ରାଜା ଯାଇ ପହଞ୍ଚିଲେ ସାନରାଣୀ କାବ୍ୟାଳଙ୍କାରାଙ୍କ ମହଲରେ । ରାଣୀ ଓ ଦାସୀମାନେ ରାଜାଙ୍କୁ ଅତ୍ୟନ୍ତ ଆଦରରେ ପାଛୋଟି ନେଲେ । ଯତ୍ନର ସହିତ ଚର୍ଚ୍ଚା କଲେ । ହେଲେ ରାଜାଙ୍କ ମନରେ ସୁଖ ନ ଥାଏ । ସାନରାଣୀ ବିଚଳିତା ହୋଇ ପଚାରିଲେ—"ମହାରାଜ ! ଆପଣଙ୍କ ମନରେ ସରାଗ କାହିଁକି ନାହିଁ ? ମୋତେ ସବୁକଥା ଖୋଲି କରି କହନ୍ତୁ ।"

ରାଜା ବଡ଼ରାଣୀଙ୍କର ବ୍ୟବହାର କଥା ବର୍ଣ୍ଣନା କଲେ । ସାନରାଣୀ କେତେ ଆଶାରେ ଦେବୀଙ୍କର ଫଳ ପାଇବା ପାଇଁ ଅପେକ୍ଷା କରି ସ୍ୱପ୍ନ ଦେଖୁଥିଲେ, ସେ ଏଣିକି ମାଆ ହେବେ । ତାଙ୍କର କୋଳରେ ସନ୍ତାନଟିଏ ହସି ଉଠିବ ! ତାଙ୍କର ସବୁ ସ୍ୱପ୍ନ ଉଭେଇଗଲା । ସେ ନିଜର ଭାଗ୍ୟକୁ ନିନ୍ଦାକରି କାନ୍ଦିବାକୁ ଲାଗିଲେ ।

ଏଇମିତି କେତେ ମାସ ଚାଲିଗଲା । ବଡ଼ରାଣୀ ମନୋରମାର କୋଳରେ ଜନ୍ମ ହେଲେ ଯାଆଁଳା ସନ୍ତାନ ଦୁଇଟି । ଦେଖିବାକୁ ଚନ୍ଦ୍ରଉଦିଆ ପରି । ଏତେକାଳ ପରେ ରାଜା ଘରେ ପୁଅ ହୋଇଛି । ରାଜମହଲରେ କେତେ ଉତ୍ସବ ଅନୁଷ୍ଠାନ ହେଲା । ପୁଅର ମାଆ ବୋଲି ସମସ୍ତଙ୍କର ଆଖି ବଡ଼ରାଣୀଙ୍କ ଉପରେ । ରାଜା ମଧ୍ୟ ଏହି ଉତ୍ସବରେ ଏପରି ମାତିଗଲେ ଯେ, ସାନରାଣୀଙ୍କୁ ସୁଦ୍ଧା ସ୍ମରଣ କଲେନାହିଁ । ଦୈବର ଲିଖନ, କେ କରିବ ଆନ ।

ଦୁଇ ପୁଅଙ୍କର ନାଁ ଦିଆହେଲା । ବଡ଼ପୁଅର ଆଖି ଦୁଇଟି ଠିକ୍ ପଦ୍ମ ଫୁଲପରି, ତାର ନାମ ରଖାଗଲା ଇନ୍ଦୀବରସେନ । ଦ୍ୱିତୀୟ ପୁଅଟି ସାନରାଣୀଙ୍କ କୋଳରେ ଆସିଥାଆନ୍ତା । ଭାଗ୍ୟର ବିଡ଼ମ୍ବନା !! ତାହା ହୋଇପାରିଲା ନାହିଁ । ରାଜା ତାର ନାମ ରଖିଲେ ଅନିଚ୍ଛାସେନ ।

ଏଣିକି ବଡ଼ରାଣୀ ମନୋରମା ପୁତ୍ର ଗର୍ବରେ ବାଟ ଚାଲୁଥାନ୍ତି । ତାଙ୍କରି କଥାରେ ରାଜା ପରିଚାଳିତ । ସାନରାଣୀ ଅବହେଳିତା ହୋଇ ଅତ୍ୟନ୍ତ ଦୁଃଖରେ ଥାଆନ୍ତି ।

ଦିନକର କଥା । ଦୁଇ ରାଜକୁମାର ଖେଳିବା ଅବସରରେ ସାନରାଣୀଙ୍କ ମହଲ ଆଡ଼େ ମାଡ଼ିଗଲେ । ପୁଅ ଦୁହିଁଙ୍କୁ ଦେଖି ସାନରାଣୀଙ୍କର କେତେ ଆନନ୍ଦ । ଦୁହିଁଙ୍କୁ କୋଳ କରି ଗେଲ କରିବାକୁ ଲାଗିଲେ । ଏତିକିବେଳେ ବଡ଼ରାଣୀଙ୍କର ଦାସୀ ସେଠାରେ ହାଜର । ସେ ଜୋର କରି ଦୁଇପୁଅଙ୍କୁ ଛଡ଼ାଇ ନେଇଗଲା । ଧୀରେ ଧୀରେ ଶୁଣାଇ ଦେଇଗଲା—''ଆଣ୍ଠୁକୁଡ଼ା ନଜର ପଡ଼ିଲେ ପୁଅ ଦୁହିଁଙ୍କର ଅମଙ୍ଗଳ ହେବ ।''

ସାନରାଣୀ ଅନୁତାପରେ ଭାଙ୍ଗିପଡ଼ିଲେ । ଈର୍ଷାରେ ତାଙ୍କର ହୃଦୟ ଜଳିବାକୁ ଲାଗିଲା । ସେହିଦିନୁ ସେ ଆଉ କେବେହେଲେ ପୁଅ ଦୁହିଁଙ୍କ ଆଡ଼େ ଚାହିଁ ନାହାନ୍ତି । କିନ୍ତୁ ଈର୍ଷାରେ ସବୁବେଳେ ସେମାନଙ୍କର ଅମଙ୍ଗଳ ଚିନ୍ତା କରିଛନ୍ତି । ମନକୁ ଯେତେ ବୁଝାଇଲେ ମଧ୍ୟ ତାହା ଆୟତ୍ତ ହୁଏନାହିଁ ।

ଚାହୁଁ ଚାହୁଁ କୋଡ଼ିଏ ବର୍ଷ ଅତୀତ ହୋଇଗଲା । ରାଜକୁମାର ଦୁହେଁ ଏଣିକି ଯୁବକ । ନାନା ଶାସ୍ତ୍ର ଓ ଶସ୍ତ୍ରବିଦ୍ୟାରେ ନିପୁଣ । ଦିନେ ଦୁଇଭାଇ ମହାରାଜାଙ୍କ ପାଖରେ ପ୍ରସ୍ତାବ କଲେ—''ପିତା ! ଆମକୁ ଦିଗ୍‌ବିଜୟ ପାଇଁ ଅନୁମତି ଦିଅନ୍ତୁ । ଦେଶ ଭ୍ରମଣର ଅନୁଭୂତି ସହିତ ରାଜ୍ୟଜୟର ଗୌରବ ମଧ୍ୟ ମିଳିବ ।''

ରାଜା ଦୁଇ ସନ୍ତାନଙ୍କର ଯୋଗ୍ୟତା ବିଷୟରେ ନିଃସନ୍ଦେହ ଥିଲେ । ପିତାଙ୍କର ଅନୁମତିକ୍ରମେ ଏକ ସେନାବାହିନୀର ନେତୃତ୍ୱ ନେଇ ଦୁଇ ଭାଇ ବାହାରି ପଡ଼ିଲେ । ବିଦାୟ ବେଳରେ ମହାରାଜ ପରିତ୍ୟାଗସେନ ଦୁଇପୁଅଙ୍କୁ ଆଶୀର୍ବାଦ କରି କହିଲେ, ''ତୁମେ ଦୁହେଁ ମା' ଚଣ୍ଡୀଙ୍କର କୃପାରେ ଜନ୍ମ ଗ୍ରହଣ କରିଛ । ବାଟରେ ବିପଦ ପଡ଼ିଲେ ତାଙ୍କୁ ସ୍ମରଣ କରିବ । ସେ ତୁମକୁ ରକ୍ଷା କରିବେ ।''

ଏକ ବିଶାଳ ସେନାବାହିନୀର ନେତୃତ୍ୱ ନେଇଥାଆନ୍ତି ଦୁଇ ରାଜକୁମାର । ପ୍ରଥମେ ସେମାନେ ପୂର୍ବଦିଗକୁ ମାଡ଼ିଚାଲିଲେ । ଯେତେ ରାଜ୍ୟ ଅତିକ୍ରମ କଲେ, ସେହି ଦେଶର ରାଜାମାନେ ହେଲେ ନତମସ୍ତକ । ଦୁଇଭାଇଙ୍କ ନିକଟରେ ବଶ୍ୟତା ସ୍ୱୀକାର କଲେ । ଦୁଇ ରାଜକୁମାରଙ୍କ ଦିଗ୍‌ବିଜୟର କାହାଣୀ ରାଜଧାନୀ ଇରାବତୀ ନଗରୀରେ ପହଞ୍ଚୁଥାଏ । ରାଜା ଓ ବଡ଼ରାଣୀଙ୍କର ଆନନ୍ଦ ଦେଖେ କିଏ ? ରାଜ୍ୟସାରା ଉତ୍ସବ ପାଳନ କରାଯାଉଥାଏ । କିନ୍ତୁ ଏହି ଆନନ୍ଦ ଉତ୍ସବରେ କେବଳ ଭାଗ ନ ଥାଏ

ସାନରାଣୀଙ୍କର । କେହି ତାଙ୍କୁ ପଚାରନ୍ତି ନାହିଁ । ଦିନକୁ ଦିନ ସାନରାଣୀ କାବ୍ୟାକଙ୍କାରା ଈର୍ଷା ଓ କ୍ରୋଧରେ ଭାଙ୍ଗି ପଡ଼ୁଥାଆନ୍ତି । ତାଙ୍କର ଅଶାନ୍ତି ବଢ଼ି ବଢ଼ି ଚାଲିଥାଏ ।

ଦିନେ ସାନରାଣୀ ମହାମନ୍ତ୍ରୀଙ୍କୁ ଡକାଇ ପଠାଇଲେ । ମହାମନ୍ତ୍ରୀ ଥିଲେ ସାନ ରାଣୀଙ୍କ ପ୍ରତି ଅତ୍ୟନ୍ତ କୃତଜ୍ଞ, କାରଣ ଏକଦା ରାଜନିଗ୍ରହରୁ ସେ ତାଙ୍କୁ ରକ୍ଷା କରିଥିଲେ ।

ମହାମନ୍ତ୍ରୀ ସାନରାଣୀଙ୍କୁ ସମ୍ମାନ ଜଣାଇ ଡାକିବାର କାରଣ ପଚାରିଲେ । ସାନରାଣୀ ଅତ୍ୟନ୍ତ ଗୋପନରେ ନିଜର ମନୋଭାବ ପ୍ରକାଶ କଲେ । ସନ୍ତାନଗର୍ବିତା ସଉତୁଣୀର ଅଭିମାନ ସେ ଆଉ ସହ୍ୟ କରିପାରୁ ନାହାନ୍ତି । ସେଥିରେ ରାଜା ମଧ ତାଙ୍କଠାରୁ ଦୂରେଇ ଗଲେଣି । ସେ ଇଚ୍ଛା କରନ୍ତି, ଏହାର ଚରମ ପ୍ରତିଶୋଧ ନେବେ ।

ରାଣୀଙ୍କର ପ୍ରସ୍ତାବ ଶୁଣି ମହାମନ୍ତ୍ରୀ ଭୟରେ ଚମକି ପଡ଼ିଲେ । ରାଣୀଙ୍କର ପ୍ରସ୍ତାବ ହେଲା—ରାଜାଙ୍କର ଦସ୍ତଖତ ମୋହର ଜାଲ କରି ଆଦେଶ ପଠାଇବାକୁ ହେବ ସମସ୍ତଙ୍କ ଅଜାଣତରେ । ଚିଠିପାଇ ସାମନ୍ତମାନେ ଯେପରି ଦୁଇ ରାଜକୁମାରଙ୍କୁ ସଙ୍ଗେ ସଙ୍ଗେ ହତ୍ୟା କରନ୍ତି ।

ମହାମନ୍ତ୍ରୀ କହିଲେ—"ମହାରାଣୀ ! ଏହି ନୃଶଂସ କାର୍ଯ୍ୟ ଦିନେ ହେଲେ ପ୍ରକାଶିତ ହେବ । ସେତେବେଳେ ପରିଣାମ ହେବ ଫାଶୀକାଠରେ ଝୁଲିବା । କେହି ଆପଣଙ୍କୁ କ୍ଷମା ଦେଇପାରିବେ ନାହିଁ ।"

ସାନରାଣୀ କହିଲେ—"ସେଥିପାଇଁ ତୁମେ ବ୍ୟସ୍ତ ହୁଅନାହିଁ । ଏପରି ଅବହେଳିତ ଜୀବନ ଯାପନ କରିବା ଅପେକ୍ଷା ବରଂ ଫାଶୀକାଠରେ ଝୁଲିବା ଭଲ । ମାତ୍ର ତା'ପୂର୍ବରୁ ଦୁଇ ରାଜକୁମାରଙ୍କର ଜୀବନ ଦୀପ ଲିଭାଇଦେବାକୁ ମୁଁ ଇଚ୍ଛା କରେ ।"

ମହାମନ୍ତ୍ରୀ ଆଉ କ'ଣ କରିବେ । ରାଣୀଙ୍କ ଇଚ୍ଛାନୁଯାୟୀ ରାଜାଙ୍କର ଦସ୍ତଖତ ମୋହର ଜାଲ କରି ଅତ୍ୟନ୍ତ ଗୋପନରେ ରାଜାଦେଶ ପଠାଇଦେଲେ ।

ସେହି ସମୟରେ ଦୁଇ ରାଜକୁମାର ଚାନ୍ଦାବାର ସହରରେ ଡେରା ପକାଇଥାନ୍ତି । ସେନାପତି ସାମନ୍ତରାଜା ଓ ସୈନ୍ୟମାନେ କିଛିଦିନ ବିଶ୍ରାମ କରି ପୁନର୍ବାର ଅଭିଯାନ ଆରମ୍ଭ କରିବେ ।

ହଠାତ୍ ରାଜକୀୟ ଗୋପନ ଆଦେଶନାମା ଶିବିରରେ ପହଞ୍ଚିଗଲା । ସେନାପତି ସାମନ୍ତମାନଙ୍କର ଏକ ଗୋପନ ସଭା ଆହ୍ୱାନ୍ କଲେ । ରାଜାଙ୍କର ଆଦେଶ—ତୁରନ୍ତ ଦୁଇ ରାଜକୁମାରଙ୍କୁ ହତ୍ୟା କରି ଖବର ପଠାଇବାକୁ ହେବ । ଏ କି ଭୟଙ୍କର ଆଦେଶ !! ହଠାତ୍ କେହି ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହଁନ୍ତି । ମାତ୍ର ଉପାୟ କ'ଣ ? ରାଜାଙ୍କର ଦସ୍ତଖତ ମୋହର ଯେ ଅଭ୍ରାନ୍ତ ! ତେଣୁ ସାମନ୍ତମାନେ ନିଷ୍ପତ୍ତି କଲେ ରାତି ପାହିଲେ ରାଜାଦେଶ ପାଳନ କରାଯିବ ।

ସେତେବେଳକୁ ମଧ୍ୟରାତ୍ରିର ଘନ ଅନ୍ଧକାର । ଶିବିରମାନଙ୍କରେ ସମସ୍ତେ ବିଶ୍ରାମ କରୁଥାଆନ୍ତି । ଦୁଇ ରାଜକୁମାର ମଧ୍ୟ ନିଶ୍ଚିନ୍ତରେ ନିଦ୍ରା ଯାଉଥାଆନ୍ତି । ମାତ୍ର ଏଣେ ଜଣେ ବୃଦ୍ଧ ସାମନ୍ତଙ୍କ ଆଖିରେ ନିଦ ନାହିଁ । ଦୁଇ ରାଜକୁମାରଙ୍କ ପ୍ରତି ତାଙ୍କର ଦୟା ହେଲା । ରାଜାଙ୍କର ଏପରି ଅନ୍ୟାୟ ଆଦେଶ ସେ କାର୍ଯ୍ୟକାରୀ କରାଇ ଦେବେ ନାହିଁ । ସେହି ନିର୍ଜନ ରାତିରେ ବୃଦ୍ଧ ସାମନ୍ତ ଯାଇ ରାଜକୁମାରଙ୍କ ଶିବିରରେ ପହଞ୍ଚିଲେ । ଅତି ଧୀରେ ସେମାନଙ୍କୁ ଉଠାଇ କହିଲେ—“ତୁରନ୍ତ ଘୋଡ଼ା ପିଠିରେ ପଳାୟନ କର । ନଚେତ୍ ସକାଳ ପାହିଲେ ପ୍ରାଣସଙ୍କଟ ଉପସ୍ଥିତ ।”

ବୃଦ୍ଧ ସାମନ୍ତ ଓ ଦୁଇ ରାଜକୁମାର ରାତିସାରା ଘୋଡ଼ାରେ ଚଢ଼ି ପଳାୟନ କଲେ । ରାତି ପାହିଲାବେଳକୁ ସେମାନେ ବହୁତ ଦୂରରେ । ପହଞ୍ଚିଥିଲେ ବିନ୍ଧ୍ୟ ଅଞ୍ଚଳର ଘନ ଅରଣ୍ୟ ମଧ୍ୟରେ । ବୃଦ୍ଧ ସାମନ୍ତ ଏହି ପଥଶ୍ରମ ସହିପାରିଲେ ନାହିଁ । ସେ ସେହି ଅରଣ୍ୟ ମଧ୍ୟରେ ପହଞ୍ଚିବାମାତ୍ରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ଏଣେ ସେନାଶିବିରରେ ଚହଳ ପଡ଼ିଗଲା । ରାଜକୁମାରଙ୍କର ଶିବିର ଖାଲିପଡ଼ିଛି । ଚାରିଆଡ଼କୁ ଦୂତ ପଠାଇ ସାମନ୍ତମାନେ ହତାଶ ହେଲେ । ସେମାନେ ରାଜାଙ୍କ ନିକଟକୁ ସମସ୍ତ ଘଟଣା ବର୍ଣ୍ଣନା କରି ଚିଠି ଲେଖିଲେ ।

ରାଜାଙ୍କର ଦସ୍ତଖତ ମୋହର ଜାଲ କରି ଏପରି ନିଷ୍ଠୁର ଆଦେଶ ଦିଆଯିବା ଘଟଣାର ଅନୁସନ୍ଧାନ ଚାଲିଲା । ରାଜା ସନ୍ଦେହରେ ମହାମନ୍ତ୍ରୀଙ୍କୁ ରାଜ୍ୟରୁ ବିତାଡ଼ିତ କରିଦେଲେ । ସେ ଜାଣିଲେ, ସାନରାଣୀଙ୍କ ଚକ୍ରାନ୍ତରେ ଏସବୁ ଘଟିଛି । ତାଙ୍କୁ ପାତାଳି ବନ୍ଦୀଘରେ ଆବଦ୍ଧ କରି ରଖିବାକୁ ଆଦେଶ ଦିଆଗଲା ।

ଏଣେ ବିନ୍ଧ୍ୟ ଅଞ୍ଚଳର ଅରଣ୍ୟ ମଧ୍ୟରେ ଦୁଇ ରାଜକୁମାର ଅସହାୟ ଅବସ୍ଥାରେ ବୁଲୁଥାଆନ୍ତି । ଚାରିଆଡ଼େ ବିପଦ । ରାଜାଙ୍କ ଅନୁଚର ସେମାନଙ୍କୁ ଖୋଜିବା ପାଇଁ ବୁଲୁଥିବେ । ଧରାପଡ଼ିଲେ ପ୍ରାଣଦଣ୍ଡ । ତାଙ୍କ ପାଇଁ ବୃଦ୍ଧ ସାମନ୍ତ ପ୍ରାଣ ଦେଲେ ।

ଏହିପରି ସଙ୍କଟ କାଳରେ ରାଜାଙ୍କର ଉପଦେଶ ମନେପଡ଼ିଲା । ସେମାନେ ଚଣ୍ଡୀଙ୍କର ଅନୁଗ୍ରହରେ ଜନ୍ମ ହୋଇଛନ୍ତି । ତାଙ୍କୁ ସ୍ମରଣ କରିବାକୁ ହେବ ।

ବଡ଼ରାଜକୁମାର ଇନ୍ଦୀବର ଅତ୍ୟନ୍ତ ନିଷ୍ଠାର ସହିତ ଚଣ୍ଡୀଙ୍କୁ ପ୍ରାର୍ଥନା କଲେ । ଚଣ୍ଡୀଙ୍କର ଆସନ ଟଳିଲା । ସେ ରାଜକୁମାରଙ୍କ ଆଗରେ ଉପସ୍ଥିତ ହୋଇ ଗୋଟିଏ ତରବାରୀ ଉପହାର ଦେଲେ । କହିଲେ, “ରାଜକୁମାର ! ଏହି ଦୈବୀ ତରବାରୀ ତୁମ ହାତରେ ଥିଲା ପର୍ଯ୍ୟନ୍ତ କିଛି ବିପଦ ବାଧିବ ନାହିଁ ।”

ଦୁଇ ଭାଇ ଖୁସି ମନରେ ଆଗକୁ ଚାଲିଲେ । କିଛିଦିନ ବୁଲି ବୁଲି ସେମାନେ ଆସି ପହଞ୍ଚିଲେ ଏକ ପ୍ରାଚୀନ ଦୁର୍ଗରେ । ଚାରିଆଡ଼େ ସୁଦୃଢ଼ ପଥର ପାଚେରି । ଏହି ଦୁର୍ଗର ସିଂହଦ୍ୱାରରେ ବିକଟାଳ ଅସୁରଟାଏ ଜଗି ରହିଛି । ଦୁଇଭାଇଙ୍କୁ ଦେଖି ସେ ସେମାନଙ୍କ ଆଡ଼କୁ ମାଡ଼ିଆସିଲା । ଦୈବୀ ତଲୁଆର ଦେଖାଇଲା ମାତ୍ରେ ଅସୁରଟା ଭସ୍ମ ହୋଇଗଲା ।

ଏଣିକି ଦୁଇ ଭାଇ ସେ ଦୁର୍ଗ ମଧ୍ୟରେ ପ୍ରବେଶ କଲେ । ଆଶ୍ଚର୍ଯ୍ୟ କଥା । କୌଣସିଠାରେ କୁଆକୋଇଲିର ଶବ୍ଦ ନାହିଁ । ରାସ୍ତାଘାଟ, ଘରଦ୍ୱାର, ଚାରିଆଡ଼େ ନିର୍ଜନ । କୌଣସି ମଣିଷର ଚଳପ୍ରଚଳ ସ୍ୱପ୍ନ ପ୍ରାୟ । ବଜାର ମଧ୍ୟରେ ଦୁଇ ଭାଇ ବୁଲିବାକୁ ଲାଗିଲେ । ଅସୁମାରୀ ଜିନିଷ ସଜା ହୋଇଛି । କେହି କିଣିବାକୁ ନାହିଁ କି ବିକିବାକୁ ନାହିଁ ।

ଦୁଇ ଭାଇ ବିଚାରିଲେ—ଏଥିରେ କିଛି ରହସ୍ୟ ନିଶ୍ଚୟ ଅଛି । ନଚେତ୍ ଏପରି ନଗର ମାନବଶୂନ୍ୟ ହୁଅନ୍ତା କାହିଁକି ? ଆଗରେ ପଡ଼ିଲା ଏକ ବିଶାଳ ରାଜପ୍ରାସାଦ । କାଳେ କାହା ସହିତ ସାକ୍ଷାତ ହୋଇପାରେ !! ଦୁଇ ରାଜକୁମାର ପ୍ରାସାଦ ମଧ୍ୟରେ ପଶିଲେ । ଭିତରେ ପହଞ୍ଚି ସେମାନେ ଦେଖିଲେ ଏକ ଖୋଲା ହଲରେ ବିରାଟ ସୁନ୍ଦର ସିଂହାସନ । ତାରି ଉପରେ ଭୟଙ୍କର ଅସୁର ଘୁମାଇ ପଡ଼ିଛି । ତାକୁ ସେବା କରୁଛନ୍ତି ଦୁଇଜଣ ରାଜକୁମାରୀ ।

ଏତେଦିନ ପରେ ଦୁଇଜଣ ମଣିଷ ଦେଖି ରାଜକୁମାରୀ ଦ୍ୱୟ ଚମକି ପଡ଼ିଲେ । ଅସୁରର ନିଦ ଭାଙ୍ଗିଗଲା । ସମ୍ମୁଖରେ ଦୁଇଜଣ ମଣିଷକୁ ଦେଖି ତା'ର ପାଟିରୁ ଲାଳ ବୋହିବାକୁ ଲାଗିଲା ।

ବଡ଼ ରାଜକୁମାର କିଛି ଭୟ ନ କରି ଅସୁରକୁ ପଚାରିଲେ—''ଆମେ କେଉଁଠାରେ ଆସି ପହଞ୍ଚିଛୁ ।''

ଅସୁର ବିକଟାଳ ହସ ହସି କହିଲା—''ଏ ଦୁର୍ଗର ରାଜା ପ୍ରଜା ସମସ୍ତେ ମୋର ଆହାର ହୋଇଛନ୍ତି । ଏହି ଦୁଇ ରାଜା ଝିଅଙ୍କର ରୂପ ମୋତେ ପାଗଳ କରିଛି । ତେଣୁ ସେମାନେ ବଞ୍ଚିଗଲେ । ତୁମକୁ ଏ ପୁରକୁ କିଏ ପଠାଇଲା ? ତୁମ ଦୁହିଁଙ୍କୁ ଖାଇଲେ ମୋର ବହୁଦିନର କ୍ଷୁଧା ମେଣ୍ଟିବ ।''

ଏତିକି କହି ଅସୁର ଯେମିତି ରାଜକୁମାର ଆଡ଼କୁ ହାତ ବଢ଼ାଇଛି, ବଡ଼ ରାଜକୁମାର ଦୈବୀ ଖଣ୍ଡାଟିକୁ ଦେଖାଇଦେଲେ । ଚାହୁଁ ଚାହୁଁ ରାକ୍ଷସ ଜଳିପୋଡ଼ି ପାଉଁଶ ହୋଇଗଲା ।

ବଡ଼ ରାଜକୁମାର ଦୁଇ ରାଜାଝିଅଙ୍କର ପରିଚୟ ପଚାରିଲେ । ଜଣେ କହିଲା—''ଆମେ ଦୁଇ ଭଉଣୀ । ମୋର ନାମ ମଦନମଞ୍ଜରୀ । ମୋର ସାନ ଭଉଣୀର ନାମ ରତ୍ନମଞ୍ଜରୀ । ଆମର କପାଳ ବଡ଼ ଅଭାଗ୍ୟ । ଆମରି ଆଖି ଆଗରେ ଅସୁର ଗୋଟି ଗୋଟି କରି ରାଜ୍ୟର ପ୍ରଜାମାନଙ୍କୁ ଖାଇଲା । ଶେଷରେ ରାଜା ରାଣୀ ସମେତ ଆମ ବଂଶରେ କାହାକୁ ରଖିଲା ନାହିଁ । କେବଳ ତାର ସେବା କରିବା ପାଇଁ ଆମ ଦୁଇ ଭଉଣୀଙ୍କ ଜୀବନ ରକ୍ଷା କରିଛି । ଆମ ଦୁଇ ଭଉଣୀଙ୍କ ଉପରେ ଏଣିକି ଅଧିକାର ଆପଣଙ୍କର । ତେଣୁ ଆମକୁ ବିବାହ କରି କୃତାର୍ଥ କରନ୍ତୁ ।''

ସେହି ଦୁର୍ଗ ନଗରୀରେ ବାହାହୋଇ ଦୁଇଭାଇ କିଛିଦିନ ଆନନ୍ଦରେ ରହିଲେ । ପାଖ ରାଜ୍ୟରୁ ଲୋକ ଆସି ରହିଲେ । ରାଜ୍ୟରେ ପୁଣି ହସ ଖେଳି ବୁଲିଲା ।

କିଛିକାଳ ପରେ ସେମାନଙ୍କର ଘରକଥା ମନେପଡ଼ିଲା । ବାପା ବୋଉ ମନେ ପଡ଼ିଲେ । ସାନ ରାଜକୁମାର ଅନିଚ୍ଛାସେନଙ୍କୁ ବଡ଼ଭାଉଜ ମଦନମଞ୍ଜରୀ କହିଲା—"ହଠାତ୍ ଏପରି ଭାବରେ ରାଜ୍ୟକୁ ଯିବା ଠିକ୍ ହେବନାହିଁ । କାଳେ ସେମାନଙ୍କୁ ହତ୍ୟା କରିବା ପାଇଁ ଚକ୍ରାନ୍ତ ଚାଲିଥିବ ।"

ଦୁଇ ଭାଇ କ'ଣ କରିବେ କିଛି ଭାବିପାରିଲେ ନାହିଁ । ମଦନମଞ୍ଜରୀ କହିଲା—ଆମ ପ୍ରାସାଦରେ ଏକ ମନ୍ତ୍ରପୂତ ଯାନ ରହିଛି । ସେଥିରେ ବସି ଯାତ୍ରା କଲେ କେହି ଜାଣିପାରିବେ ନାହିଁ । ସାନରାଜକୁମାର ସେହି ଯାନରେ ଗୋପନରେ ଯାଇ ରାଜ୍ୟର ହାଲଚାଲ ବୁଝିଆସି ପାରିବେ ।

ଅନିଚ୍ଛାସେନ ମନ୍ତ୍ରଯାନରେ ଯାଇ ଇରାବତୀ ନଗରୀରେ ଓହ୍ଲାଇଲେ ଏକ ଉପବନ ମଧ୍ୟରେ । ସେହିଠାରେ ରାଜପୁରୋହିତ ଫୁଲ ତୋଳୁଥିଲେ । ସେ ସାନରାଜକୁମାରଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ—"ସାନରାଜକୁମାର ! ତୁମେ ଜୀବନରେ ଅଛ । ତୁମ ପାଇଁ ରାଜାରାଣୀ ପାଗଳ ପରି ହେଉଛନ୍ତି । ରାଜ୍ୟବାସୀଙ୍କ ମନରେ ଆଦୌ ସରାଗ ନାହିଁ ।"

ସାନରାଜକୁମାର କହିଲା—"ବଡ଼ ରାଜକୁମାର ମଧ୍ୟ ବଞ୍ଚିଛନ୍ତି । ରାଜ୍ୟର ଖବର କଅଣ ?"

ରାଜପୁରୋହିତ କହିଲେ—"ସାନରାଣୀଙ୍କ ଚକ୍ରାନ୍ତରେ ତୁମ ଦୁଇଭାଇଙ୍କୁ ହତ୍ୟା କରିବା ପାଇଁ ଚକ୍ରାନ୍ତ ହୋଇଥିଲା । ରାଜା ଏକଥା ଜାଣିଲାପରେ ମନ୍ତ୍ରୀଙ୍କୁ ନିର୍ବାସିତ କରିଛନ୍ତି । ସାନରାଣୀଙ୍କୁ ପାତାଳି କାରାଗାରରେ ବନ୍ଦୀ କରାଯାଇଛି ।"

ଏଥର ନିଶ୍ଚିନ୍ତ ମନରେ ଅନିଚ୍ଛାସେନ ରାଜାରାଣୀଙ୍କୁ ସାକ୍ଷାତ କଲା । ଏତେଦିନ ପରେ ସାନପୁଅକୁ ଫେରିପାଇ ସେମାନେ ଅପୂର୍ବ ଶାନ୍ତି ଅନୁଭବ କଲେ । ବଡ଼ପୁଅ ମଧ୍ୟ ଏକ ଦୁର୍ଗ ରାଜ୍ୟରେ ରାଜୁତି କରୁଛି ଜାଣି ଆହୁରି ସୁଖୀ ହେଲେ ।

ଅନିଚ୍ଛାସେନ ଏଥର ବଡ଼ଭାଇଙ୍କ ପାଖକୁ ଫେରିଯିବାର କଥା । ବଡ଼ରାଣୀ ମନୋରମା ପୁଅକୁ ଏକୁଟିଆ ଛାଡ଼ିଦେବାକୁ ରାଜି ହେଲେ ନାହିଁ । ରାଜାରାଣୀ ସାନପୁଅ ସହିତ ମନ୍ତ୍ର ବିମାନରେ ବସି ବାହାରିଲେ ଦୁର୍ଗ ନଗରୀକୁ ।

ଏହା ମଧ୍ୟରେ ପାତାଳି କାରାଗାରରେ ସାନରାଣୀଙ୍କୁ ଦାସୀମାନେ ସବୁକଥା ଜଣାଉଥାନ୍ତି । ଦୁଇ ରାଜପୁତ୍ର ଜୀବନରେ ଅଛନ୍ତି ବୋଲି ଜାଣି ସେ ଭାଙ୍ଗିପଡ଼ିଲେ । ସେ ଦେବୀ ଚଣ୍ଡୀଙ୍କୁ ଅନବରତ ପ୍ରାର୍ଥନା କରିବାକୁ ଲାଗିଲେ । ସେ ନିବେଦନ କଲେ—"ହେ ମା' ଚଣ୍ଡୀ ! ଏ କିପରି ନ୍ୟାୟ ! ମୋ ପ୍ରତି କପଟତା କରି ଆଜି

ବଡ଼ରାଣୀ ପୁତ୍ରଗର୍ବିଣୀ, ରାଜା ସୁହାଗିନୀ । ମୁଁ ହେଲି ସନ୍ତାନହୀନା । ନାନା ଲାଞ୍ଛନାର ଶିକାର । ଏପରି ଜୀବନ ଧରି ଲାଭ କ'ଣ ?''

ଚଣ୍ଡୀଙ୍କର ଦୟା ହେଲା । ସେ କାରାଗାର ମଧ୍ୟରେ ଦେଖାଦେଇ କହିଲେ—''ତୁ ବ୍ୟସ୍ତ ହୁଅନାହିଁ । ବାପ ମା'ଙ୍କର ଅନ୍ୟାୟ ସନ୍ତାନମାନେ ଭୋଗ କରିବେ । ତୋର ଦୁଃଖ ଅଳ୍ପଦିନ ପରେ ଦୂର ହେବ ।''

ଏଣେ ଚଣ୍ଡୀ ସାନରାଣୀଙ୍କୁ ଏହି ବର ଦେଲାବେଳକୁ ତେଣେ ପଥର ଦୁର୍ଗରେ ବଡ଼ ରାଜକୁମାର ବେହୋସ ହୋଇ ଶେଯରେ ପଡ଼ିରହିଲେ । ଦୁଇ ରାଜକୁମାରୀ ମନ ଦୁଃଖରେ କାଳ କାଟୁଥାଆନ୍ତି ।

ସାନପୁଅ ସହିତ ରାଜାରାଣୀ ଯାଇ ଦୁର୍ଗ ନଗରୀରେ ପହଞ୍ଚିଲେ । କେତେ ଆଶା କରିଥିଲେ ବଡ଼ପୁଅକୁ ଭେଟିବେ ବୋଲି । କିନ୍ତୁ ସେ ପ୍ରାଣହୀନ ଅବସ୍ଥାରେ ପଡ଼ିରହିଛି । ରାଜନଅରରେ ଶୋକର ଛାୟା । ସାନରାଜକୁମାର ମନ୍ତ୍ରଯାନରୁ ଓହ୍ଲାଇ ଯେମିତି ବଡ଼ଭାଇକୁ ଛୁଇଁ ଦେଇଛି, ସେ ମଧ୍ୟ ପ୍ରାଣହୀନ ହୋଇ ସେଇଠି ପଡ଼ିରହିଲା । ରାଜାରାଣୀ, ଦୁଇ ରାଜକୁମାରୀ ଦୁଃଖରେ ଭାଙ୍ଗିପଡ଼ିଲେ ।

ରାଜା ରାଣୀ ଚଣ୍ଡୀଙ୍କୁ ସ୍ମରଣ କରି ଅଧିଆ ପଡ଼ିଲେ । ଚଣ୍ଡୀ ସ୍ୱପ୍ନରେ କହିଲେ—''ତୁମେ ଦୁହେଁ ମୋର ଆଦେଶ ଅବଜ୍ଞା କଲ । ବଡ଼ରାଣୀ କପଟତା କରି ସାନରାଣୀଙ୍କୁ ଅପମାନିତା କଲା । ତା'ରି ଫଳ ଏବେ ଭୋଗ କରୁଛ । ତୁରନ୍ତ ସାନରାଣୀଙ୍କୁ ବନ୍ଦିଶାଳାରୁ ଉଦ୍ଧାର କର ଏବଂ ତାଙ୍କୁ କ୍ଷମାଭିକ୍ଷା କର । ସେ ଆଦର କରି ଦୁଇ ରାଜକୁମାରଙ୍କୁ ସ୍ପର୍ଶ କଲେ ସେମାନେ ଜୀବନ ଲାଭ କରିବେ ।''

ରାଜାରାଣୀ ନିଜର ଦୋଷ ସ୍ୱୀକାର କଲେ । ମନ୍ତ୍ରଯାନରେ ଫେରିଯାଇ ସାନରାଣୀଙ୍କୁ କ୍ଷମା ମାଗିଲେ ଏବଂ ପୁଅ ଦୁହିଁଙ୍କୁ ଆଶୀର୍ବାଦ କରିବାକୁ ପ୍ରାର୍ଥନା କଲେ । ସାନରାଣୀଙ୍କର ସମସ୍ତ ଅଭିମାନ ତୁଟିଗଲା । ପୁଅ ଦୁହିଁଙ୍କ ପାଇଁ ମନ ତାଙ୍କର ବିକଳ ହେଲା । ସମସ୍ତେ ମନ୍ତ୍ରଯାନରେ ଫେରିଆସିଲେ ଦୁର୍ଗପୁରୀକୁ । ସାନରାଣୀ ଦୁଇପୁଅଙ୍କ ମସ୍ତକରେ ଯେମିତି ହାତ ଦେଇଛନ୍ତି, ସେମାନେ ନିଦରୁ ଉଠିଲା ପରି ଶୋଭା ପାଇଲେ । ସାନମା'ଙ୍କ ପାଦତଳେ ପ୍ରଣାମ ଜଣାଇ ନିଜକୁ ଧନ୍ୟ ମନେ କଲେ ।

ସାନପୁଅ ରାଣୀ ରତ୍ନମଞ୍ଜରୀ ସହିତ ରାଜୁତି କଲେ ଦୁର୍ଗ ନଗରୀରେ । ବଡ଼ପୁଅ ମଦନମଞ୍ଜରୀ ସହିତ ରାଜ୍ୟକୁ ଫେରିଆସିଲେ ଏବଂ ପିତାଙ୍କ ଅନ୍ତେ ରାଜ୍ୟଶାସନ କଲେ ।



# ଦୁଇ ଭାଇଙ୍କର କାହାଣୀ

ଅତୀତ କାଳର କଥା । ରାଧା ନାମକ ରାଜ୍ୟରେ ଉଗ୍ରଭଟ୍ଟ ନାମରେ ଜଣେ ରାଜା ରାଜୁତି କରୁଥିଲେ । ତାଙ୍କର ରାଣୀ ଥିଲେ ପାଟଳୀପୁତ୍ର ରାଜାଙ୍କର ଦୁହିତା । ରାଇଜର ଲୋକେ ସୁଖଶାନ୍ତିରେ ଥାଆନ୍ତି । ରାଣୀ ମନୋରମା ଅତ୍ୟନ୍ତ ସୁନ୍ଦରୀ ଓ ଦୟାଶୀଳା ଥିଲେ । ପ୍ରଜାମାନଙ୍କୁ ସେ ନିଜର ସନ୍ତାନ ପରି ମନେ କରୁଥିଲେ । ଯୋଗୀ ଭିକାରି କେହି ଖାଲି ହାତରେ ରାଜାଙ୍କ ଦୁଆରୁ ଫେରିଯିବାର ଶୁଣା ନ ଥାଏ ।

ଏକଦା ରାଜାଙ୍କ ନଅରରେ ଯାତ୍ରା ହେଉଥାଏ । ରାଜାରାଣୀଙ୍କ ସହିତ ଅମାତ୍ୟ ଓ ପ୍ରଜାମାନେ ରାତି ରାତି ଉଜାଗର ରହି ଯାତ୍ରା ଉପଭୋଗ କରୁଥାଆନ୍ତି । ଯାତ୍ରାର ଶେଷଦିନ ରାତି । ଖୁବ୍ ଜନସମାଗମ ହୋଇଥାଏ । ଅମାତ୍ୟମାନଙ୍କ ଗହଣରେ ରାଜା ହସଖୁସି ହେଉଥାଆନ୍ତି । ହଠାତ୍ ସମସ୍ତଙ୍କ ଆଖି ପଡ଼ିଲା ଯାତ୍ରାମଞ୍ଚ ଉପରେ । 'ଲାସ୍ୟବତୀ' ନାମରେ ଝିଅଟିଏ ନୃତ୍ୟ କରିବାକୁ ଆରମ୍ଭ କଲା । ଏପରି ନାଚ ପୂର୍ବରୁ କେହି ଦେଖି ନ ଥିଲେ । ରାଜାଙ୍କର ଆଖି ଲାଖି ରହିଲା ତାର ରୂପ ଲାବଣ୍ୟରେ । ଲାସ୍ୟବତୀ ଥିଲା ଯାତ୍ରାଦଳର ମାଲିକଙ୍କ ଝିଅ । ରାଜା ପ୍ରସ୍ତାବ କଲେ ଲାସ୍ୟବତୀକୁ ରାଣୀର ସମ୍ମାନ ଦେବାପାଇଁ । ରାଜାଙ୍କ କଥାରେ କିଏ ଅବା ଅମତ ହେବ ? ମହାଆଡ଼ମ୍ବରରେ ରାଜା ଲାସ୍ୟବତୀକୁ ଦ୍ୱିତୀୟ ରାଣୀ ଭାବରେ ବରଣ କଲେ ।

ନୂଆରାଣୀ ରାଜମହଲରେ ପାଦ ଦେଲାଦିନୁ ରାଜା ବଡ଼ରାଣୀଙ୍କୁ ଏକପ୍ରକାର ଭୁଲିଗଲେ । ରାଜକାର୍ଯ୍ୟରେ ଆଉ ମନ ଦେଲେନାହିଁ । ମନ୍ତ୍ରୀ, ସେନାପତି ରାଜ୍ୟ ଚଳାଉଥାନ୍ତି । ବଡ଼ ଦୁଃଖ ଓ ଅଭିମାନରେ ବଡ଼ରାଣୀଙ୍କର ଦିନ କଟୁଥାଏ ।

ବାହାଘରର କିଛି ବର୍ଷ ହୋଇଗଲା । ଦୁଇଟି ରାଣୀ । ଅଥଚ କାହାରି କୋଳରେ ସନ୍ତାନଟିଏ ନାହିଁ । ବଂଶରକ୍ଷା ହେବ କିପରି ? ରାଜାଙ୍କର ମନରେ ସୁଖ ନ ଥାଏ । ଶେଷରେ ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ରାଜା ପୁରୋହିତଙ୍କୁ ଆଦେଶ ଦେଲେ ପୁତ୍ରେଷ୍ଟି ଯଜ୍ଞ କରିବା ପାଇଁ ।

ମହାସମାରୋହରେ ଯଜ୍ଞର ଆୟୋଜନ ହେଲା । ଯଜ୍ଞ ଶେଷରେ ଅଗ୍ନିକୁଣ୍ଡରୁ ଯେଉଁ ଚରୁଅନ୍ନ ମିଳିଲା, ତାହାକୁ ଦୁଇରାଣୀ ଭାଗ କରି ଭୋଜନ କଲେ । ଅଳ୍ପଦିନ ପରେ ଦୁଇରାଣୀ ଗର୍ଭବତୀ ହେଲେ । ବଡ଼ରାଣୀ ମନୋରମାଙ୍କର ପୁତ୍ରର ନାମ ରହିଲା ଭୀମଭଟ୍ଟ । ସାନରାଣୀ ଲାସ୍ୟବତୀଙ୍କର ପୁତ୍ର ସମରଭଟ୍ଟ ନାମରେ ପରିଚିତ ହେଲେ ।

ଚନ୍ଦ୍ରଉଦିଆ ପରି ଦୁଇ ରାଜକୁମାର ବଢ଼ିବାକୁ ଲାଗିଲେ । ରାଜାଙ୍କ ନଅରରେ କେତେ ଆନନ୍ଦ ଉତ୍ସବ ହେଉଥାଏ । ରାଜକୁମାର ଦୁହିଁଙ୍କୁ ଦେଖିଲେ ଆଖି ଲାଖି ରହିଯିବ । ରଜାଘରେ ଅବା କେଉଁ କଥାର ଅପୂର୍ବ । ଯହୁଁ ଯହୁଁ ରାଜକୁମାରଦ୍ୱୟ

ବଡ଼ ହେବାକୁ ଲାଗିଲେ, ସେମାନଙ୍କର ସ୍ୱଭାବ ଓ ଆଚରଣରେ ପାର୍ଥକ୍ୟ ଧରାପଡ଼ି ଯାଉଥାଏ ।

ବଡ଼ରାଣୀଙ୍କର ପୁଅ ଭୀମଭଞ୍ଜ ଅତ୍ୟନ୍ତ ଧୀର, ବିନୟୀ ଏବଂ ବିଦ୍ୟାବୁଦ୍ଧିରେ ପାରଙ୍ଗମ । ଶାସ୍ତ୍ର ଆଉ ଶସ୍ତ୍ର ବିଦ୍ୟାରେ ସେ ସବୁବେଳେ ଆଗୁଆ । ଏଇ ପିଲାଟିଦିନୁ ପ୍ରଜାମାନଙ୍କର ସୁଖଦୁଃଖର ସାଥୀ । ସମସ୍ତେ ଧନ୍ୟ ଧନ୍ୟ କରୁଥାଆନ୍ତି । ବୁଢ଼ା ରାଜାଙ୍କ ପରେ ଭୀମଭଞ୍ଜ ଶାସନରେ ସେମାନେ ଆହୁରି ସୁଖରେ ରହିବେ, ଏହିପରି କଥା ହେଉଥାଆନ୍ତି ।

ଅନ୍ୟ ପକ୍ଷରେ ସାନରାଣୀ ପୁଅ ସମରଭଞ୍ଜ କଥା ନ କହିଲେ ଭଲ । ସେ ଯେତିକି ବଡ଼ ହେଉଥାଏ, ତାର ଅତ୍ୟାଚାରରେ ପ୍ରଜାମାନେ ସେତିକି ବିକଳ ହେଉଥାଆନ୍ତି । ବଡ଼ ଲୋକଙ୍କୁ ଉତ୍ତର ନାହିଁ । ସମସ୍ତଙ୍କ ମୁହଁରେ ବଡ଼ ରାଜକୁମାର ଭୀମଭଞ୍ଜର ପ୍ରଶଂସା । ସାନରାଣୀ ପୁଅ ବିଷୟରେ କହନ୍ତି––"ଯେତେହେଲେ ନାଚୁଣୀର ପୁଅ ତ । ସେ ଆଉ କ'ଣ ହେବ ?"

ବେଳେ ବେଳେ ରାଜା ଉଗ୍ରଭଞ୍ଜଙ୍କ କାନରେ ପୁଅମାନଙ୍କର କଥା ପଡ଼େ । ସେ ତ ସାନରାଣୀଙ୍କ ପାଇଁ ପାଗଳ । ତେଣୁ ସମରଭଞ୍ଜର ଉଗ୍ରସ୍ୱଭାବ କଥା ଶୁଣିଲେ ସେ ପ୍ରଶଂସା କରନ୍ତି । 'ରଜାପୁଅ ହେବ ତ ଏହିପରି ।' ବଡ଼ପୁଅକୁ ନାପସନ୍ଦ କରି କହନ୍ତି, ରଜାପୁଅ ହୋଇ ଏତେ ମାନ୍ଦା ଆଚରଣ କ'ଣ ? ସମରଭଞ୍ଜ ପରି ତେଜୀୟାନ ହେବା ଆବଶ୍ୟକ ।

ବାପାଙ୍କର ଗେହ୍ଲା ହୋଇ ସମରଭଞ୍ଜ ଅଧିକ ଉଚ୍ଛୃଙ୍ଖଳ ହୋଇପଡ଼ିଲା । ସେ ଆଉ କାହାରିକୁ ମାନିଲା ନାହିଁ । ସମୟ ପାଇଲେ ବଡ଼ଭାଇ ଭୀମଭଞ୍ଜକୁ ମଧ୍ୟ ଅବହେଳା କିମ୍ବା ଅପମାନିତ କରେ । ହେଲେ ବି ବଡ଼ଭାଇ ହିସାବରେ ସେ କ୍ଷମା କରିଦିଏ ।

ଦିନକର କଥା । ଦୁଇଭାଇ ମାଲକୁସ୍ତି ଲଢୁଥିଲେ । ସମରଭଞ୍ଜ ଯେତେବେଳେ ନ ପାରିଲା, କୁସ୍ତିର ନିୟମ ଭାଙ୍ଗି ଭୀମଭଞ୍ଜକୁ ମୁଥ ମାରିଲା । ଅନ୍ୟ କେହି ହୋଇଥିଲେ ତଳେ ବେହୋସ ହୋଇ ପଡ଼ିଯାଇଥାଆନ୍ତା, ତେବେ ଭୀମଭଞ୍ଜ ଆଉ ସହିପାରିଲା ନାହିଁ । ସେ ସମରଭଞ୍ଜକୁ ଟେକି ନେଇ ବାଲି ଉପରେ କଚାଡ଼ି ଦେଲା । ସମରଭଞ୍ଜ ଧୂଳି ଝାଡ଼ିହୋଇ ସାନରାଣୀଙ୍କ ପାଖକୁ ଗଲା ଏବଂ କାନ୍ଦି କରି ବଡ଼ଭାଇ ନାମରେ ଲଗାଇ ଲୁଟାଇ କେତେ କଥା କହିଲା ।

ସାନରାଣୀ ତ ରାଜାଙ୍କୁ ହାତମୁଠାରେ ରଖିଥାଆନ୍ତି । ସେ ରାଜାଙ୍କ ଆଗରେ ଫେରାଦ କଲେ । ବଡ଼ରାଣୀର ପୁଅ ଅତ୍ୟାଚାରରେ ସେ ଆଉ ଏ ନଅରରେ ରହିପାରିବେ ନାହିଁ । କେଉଁଦିନ ସେ ସମରଭଞ୍ଜକୁ ପ୍ରାଣରେ ମାରି ଘକାଇବ । ସେ କେବଳ ସମରଭଞ୍ଜକୁ ଈର୍ଷା କରୁନାହିଁ, କେଉଁଦିନ ସେ ଆମ ଦୁହିଁଙ୍କୁ ମଧ୍ୟ ମାରି ପକାଇବ ।

ରାଜା ତ ଅବୁଝା ଲୋକ । ସାନରାଣୀ କଥାରେ ବିଚଳିତ ହୋଇ ସେ ବଡ଼ ରାଜକୁମାରକୁ ରାଜସଭାରୁ ତଡ଼ିଦେଲେ । ସମସ୍ତ ରାଜକୀୟ ସୁବିଧା ଓ ସମ୍ମାନରୁ ମଧ ତାକୁ ବଞ୍ଚିତ କଲେ ।

ଏକଥା ଶୁଣି ପ୍ରଜାମାନେ ଦୁଃଖ ପାଉଥାଆନ୍ତି । ସେମାନେ ସନ୍ଦେହ କଲେ, ହୁଏତ ଶେଷରେ ରାଜା ସାନରାଣୀ କଥାରେ ବଡ଼ରାଜକୁମାରକୁ ରାଜସିଂହାସନରୁ ବଞ୍ଚିତ କରିବେ ଆଉ ରାଜଗାଦି ଦେବେ ନାତୁଣୀର ପୁଅକୁ ।

ବଡ଼ରାଣୀ ମନୋରମା ନୀରବରେ ଦୁଃଖ ପାଉଥାଆନ୍ତି । ନିଜର ପୁଅ ପ୍ରତି ରାଜାଙ୍କର ଅନ୍ୟାୟ ବିଚାର ଶୁଣିସାରିଲା ପରେ ସେ ଆଉ ଥୟ ଧରି ବସିପାରିଲେ ନାହିଁ । ପୁଅକୁ ଡାକି କହିଲେ, ''ବାବା ! ଏ ରାଜ୍ୟରେ ତୁମର ଜୀବନ ଆଉ ନିରାପଦ ନୁହେଁ । ମୋ ମତରେ ତୁମେ ମାମୁଁ ଘରକୁ ଚାଲିଯାଅ । ସେଠାରେ ଶାନ୍ତିରେ ରହିଲେ ମୁଁ ଏଠାରେ ସୁଖୀ ହେବି । ନଚେତ୍ ଦିନ ରାତି ମୋର ମନ ଅଥୟ ହେଉଛି ।''

ଭୀମଭଟ୍ଟ କହିଲେ, ''ମା ! ଏପରି ଭାବରେ ପଳାୟନ କରିବା ମୋ ପକ୍ଷରେ ଉଚିତ ହେବନାହିଁ । ସମରଭଟ୍ଟ ମୋର କିଛି କ୍ଷତି କରିପାରିବ ନାହିଁ । ଯଦି ସେପରି ପ୍ରତିକୂଳ ସମୟ ପହଞ୍ଚେ, ମୁଁ ନିଶ୍ଚୟ ଆତ୍ମରକ୍ଷାର ବ୍ୟବସ୍ଥା କରିବି ।''

ବଡ଼ରାଣୀ ମନୋରମା ଏକଥା ଶୁଣି ନିଶ୍ଚିନ୍ତ ହେଲେ ।

କିଛି ଦିନ ପରର କଥା । ରାଜ୍ୟକୁ ଜଣେ ଅଶ୍ୱବେପାରୀ ଆସିଥିଲେ । ଏହି କଥା ଜାଣିପାରି ରାଜକୁମାର ଭୀମଭଟ୍ଟ ତା'ର ବନ୍ଧୁ ଶଙ୍ଖଦତ୍ତ ସହିତ ସେହି ବେପାରୀ ପାଖରେ ପହଞ୍ଚିଲେ । ଚମତ୍କାର ଧଳା ଘୋଡ଼ାଟିଏ ରାଜକୁମାର ମୂଲାଇ ସାରି ତା'ର ଲଗାମ ଧରିଲେ । ଏହି ସମୟରେ ନିଜର ଅନୁଚରମାନଙ୍କ ସହିତ ସାନରାଜକୁମାର ସମରଭଟ୍ଟ ସେଠାରେ ପହଞ୍ଚି ଧଳାଘୋଡ଼ାଟିକୁ ନେବାପାଇଁ ଦାବୀ କଲେ । ବଣିକ କହିଲେ, ''ଧଳାଘୋଡ଼ାଟି ମୂଲ ହୋଇସାରିଛି । ଆପଣ ଅନ୍ୟ ଘୋଡ଼ା ନେଇପାରନ୍ତି ।''

ଅହଂକାରୀ ରାଜକୁମାର କିନ୍ତୁ ଜିଦ୍ କଲା ଧଳାଘୋଡ଼ାଟିକୁ ନେବାପାଇଁ । ତାର ଅନୁଚରମାନେ ବଳପ୍ରୟୋଗ କରି ଘୋଡ଼ାଟିକୁ ଟାଣିବାକୁ ଲାଗିଲେ । ଏପରି ବ୍ୟବହାରରେ ଭୀମଭଟ୍ଟ ଓ ତାର ବନ୍ଧୁ ଶଙ୍ଖଦତ୍ତ ତଲୁଆର ବାହାର କରି ସେମାନଙ୍କର ମୁକାବିଲା କଲେ । ଅନୁଚରମାନେ ଭୟରେ ସେ ସ୍ଥାନ ଛାଡ଼ି ପଳେଇଗଲେ । ଶାସ୍ତି ସ୍ୱରୂପ ସମରଭଟ୍ଟର ମୁଣ୍ଡକୁ ନଣ୍ଡା କରିଦେଲେ ।

ଅପମାନିତ ସାନ ରାଜକୁମାର କାନ୍ଦି କାନ୍ଦି ରାଜାଙ୍କ ଆଗରେ ଫେରାଦ ହେଲେ । ନାନା ଖଟମିଛ କଥା ବଡ଼ଭାଇ ନାମରେ କହିଲେ ।

ବଡ଼ରାଣୀ ପୁତ୍ରଗର୍ବିଣୀ, ରାଜା ସୁହାଗିନୀ । ମୁଁ ହେଲି ସନ୍ତାନହୀନା । ନାନା ଲାଞ୍ଛନାର ଶିକାର । ଏପରି ଜୀବନ ଧରି ଲାଭ କ'ଣ ?''

ଚଣ୍ଡୀଙ୍କର ଦୟା ହେଲା । ସେ କାରାଗାର ମଧ୍ୟରେ ଦେଖାଦେଇ କହିଲେ—''ତୁ ବ୍ୟସ୍ତ ହୁଅନାହିଁ । ବାପ ମା'ଙ୍କର ଅନ୍ୟାୟ ସନ୍ତାନମାନେ ଭୋଗ କରିବେ । ତୋର ଦୁଃଖ ଅଳ୍ପଦିନ ପରେ ଦୂର ହେବ ।''

ଏଣେ ଚଣ୍ଡୀ ସାନରାଣୀଙ୍କୁ ଏହି ବର ଦେଲାବେଳକୁ ତେଣେ ପଥର ଦୁର୍ଗରେ ବଡ଼ ରାଜକୁମାର ବେହୋସ ହୋଇ ଶେଯରେ ପଡ଼ିରହିଲେ । ଦୁଇ ରାଜକୁମାରୀ ମନ ଦୁଃଖରେ କାଳ କାଟୁଥାଆନ୍ତି ।

ସାନପୁଅ ସହିତ ରାଜାରାଣୀ ଯାଇ ଦୁର୍ଗ ନଗରୀରେ ପହଞ୍ଚିଲେ । କେତେ ଆଶା କରିଥିଲେ ବଡ଼ପୁଅକୁ ଭେଟିବେ ବୋଲି । କିନ୍ତୁ ସେ ପ୍ରାଣହୀନ ଅବସ୍ଥାରେ ପଡ଼ିରହିଛି । ରାଜନଅରରେ ଶୋକର ଛାୟା । ସାନରାଜକୁମାର ମନ୍ତ୍ରଯାନରୁ ଓହ୍ଲାଇ ଯେମିତି ବଡ଼ଭାଇକୁ ଛୁଇଁ ଦେଇଛି, ସେ ମଧ୍ୟ ପ୍ରାଣହୀନ ହୋଇ ସେଇଠି ପଡ଼ିରହିଲା । ରାଜାରାଣୀ, ଦୁଇ ରାଜକୁମାରୀ ଦୁଃଖରେ ଭାଙ୍ଗିପଡ଼ିଲେ ।

ରାଜା ରାଣୀ ଚଣ୍ଡୀଙ୍କୁ ସ୍ମରଣ କରି ଅଧିଆ ପଡ଼ିଲେ । ଚଣ୍ଡୀ ସ୍ୱପ୍ନରେ କହିଲେ—''ତୁମେ ଦୁହେଁ ମୋର ଆଦେଶ ଅବଜ୍ଞା କଲ । ବଡ଼ରାଣୀ କପଟତା କରି ସାନରାଣୀଙ୍କୁ ଅପମାନିତା କଲା । ତା'ରି ଫଳ ଏବେ ଭୋଗ କରୁଛ । ତୁରନ୍ତ ସାନରାଣୀଙ୍କୁ ବନ୍ଦିଶାଳାରୁ ଉଦ୍ଧାର କର ଏବଂ ତାଙ୍କୁ କ୍ଷମାଭିକ୍ଷା କର । ସେ ଆଦର କରି ଦୁଇ ରାଜକୁମାରଙ୍କୁ ସ୍ପର୍ଶ କଲେ ସେମାନେ ଜୀବନ ଲାଭ କରିବେ ।''

ରାଜାରାଣୀ ନିଜର ଦୋଷ ସ୍ୱୀକାର କଲେ । ମନ୍ତ୍ରଯାନରେ ଫେରିଯାଇ ସାନରାଣୀଙ୍କୁ କ୍ଷମା ମାଗିଲେ ଏବଂ ପୁଅ ଦୁହିଁଙ୍କୁ ଆଶୀର୍ବାଦ କରିବାକୁ ପ୍ରାର୍ଥନା କଲେ । ସାନରାଣୀଙ୍କର ସମସ୍ତ ଅଭିମାନ ତୁଟିଗଲା । ପୁଅ ଦୁହିଁଙ୍କ ପାଇଁ ମନ ତାଙ୍କର ବିକଳ ହେଲା । ସମସ୍ତେ ମନ୍ତ୍ରଯାନରେ ଫେରିଆସିଲେ ଦୁର୍ଗପୁରୀକୁ । ସାନରାଣୀ ଦୁଇପୁଅଙ୍କ ମସ୍ତକରେ ଯେମିତି ହାତ ଦେଇଛନ୍ତି, ସେମାନେ ନିଦରୁ ଉଠିଲା ପରି ଶୋଭା ପାଇଲେ । ସାନମା'ଙ୍କ ପାଦତଳେ ପ୍ରଣାମ ଜଣାଇ ନିଜକୁ ଧନ୍ୟ ମନେ କଲେ ।

ସାନପୁଅ ରାଣୀ ରତ୍ନମଞ୍ଜରୀ ସହିତ ରାଜୁତି କଲେ ଦୁର୍ଗ ନଗରୀରେ । ବଡ଼ପୁଅ ମଦନମଞ୍ଜରୀ ସହିତ ରାଜ୍ୟକୁ ଫେରିଆସିଲେ ଏବଂ ପିତାଙ୍କ ଅନ୍ତେ ରାଜ୍ୟଶାସନ କଲେ ।



# ଦୁଇ ଭାଇଙ୍କର କାହାଣୀ

ଅତୀତ କାଳର କଥା । ରାଧା ନାମକ ରାଜ୍ୟରେ ଉଗ୍ରଭଟ୍ଟ ନାମରେ ଜଣେ ରାଜା ରାଜୁତି କରୁଥିଲେ । ତାଙ୍କର ରାଣୀ ଥିଲେ ପାଟଳୀପୁତ୍ର ରାଜାଙ୍କର ଦୁହିତା । ରାଇଜର ଲୋକେ ସୁଖଶାନ୍ତିରେ ଥାଆନ୍ତି । ରାଣୀ ମନୋରମା ଅତ୍ୟନ୍ତ ସୁନ୍ଦରୀ ଓ ଦୟାଶୀଳା ଥିଲେ । ପ୍ରଜାମାନଙ୍କୁ ସେ ନିଜର ସନ୍ତାନ ପରି ମନେ କରୁଥିଲେ । ଯୋଗୀ ଭିକାରି କେହି ଖାଲି ହାତରେ ରାଜାଙ୍କ ଦୁଆରୁ ଫେରିଯିବାର ଶୁଣା ନ ଥାଏ ।

ଏକଦା ରାଜାଙ୍କ ନଅରରେ ଯାତ୍ରା ହେଉଥାଏ । ରାଜାରାଣୀଙ୍କ ସହିତ ଅମାତ୍ୟ ଓ ପ୍ରଜାମାନେ ରାତି ରାତି ଉଜାଗର ରହି ଯାତ୍ରା ଉପଭୋଗ କରୁଥାଆନ୍ତି । ଯାତ୍ରାର ଶେଷଦିନ ରାତି । ଖୁବ୍ ଜନସମାଗମ ହୋଇଥାଏ । ଅମାତ୍ୟମାନଙ୍କ ଗହଣରେ ରାଜା ହସଖୁସି ହେଉଥାଆନ୍ତି । ହଠାତ୍ ସମସ୍ତଙ୍କ ଆଖି ପଡ଼ିଲା ଯାତ୍ରାମଞ୍ଚ ଉପରେ । 'ଲାସ୍ୟବତୀ' ନାମରେ ଝିଅଟିଏ ନୃତ୍ୟ କରିବାକୁ ଆରମ୍ଭ କଲା । ଏପରି ନାଚ ପୂର୍ବରୁ କେହି ଦେଖି ନ ଥିଲେ । ରାଜାଙ୍କର ଆଖି ଲାଖି ରହିଲା ତାର ରୂପ ଲାବଣ୍ୟରେ । ଲାସ୍ୟବତୀ ଥିଲା ଯାତ୍ରାଦଳର ମାଲିକଙ୍କ ଝିଅ । ରାଜା ପ୍ରସ୍ତାବ କଲେ ଲାସ୍ୟବତୀକୁ ରାଣୀର ସମ୍ମାନ ଦେବାପାଇଁ । ରାଜାଙ୍କ କଥାରେ କିଏ ଅବା ଅମତ ହେବ ? ମହାଆଡ଼ମ୍ବରରେ ରାଜା ଲାସ୍ୟବତୀକୁ ଦ୍ୱିତୀୟ ରାଣୀ ଭାବରେ ବରଣ କଲେ ।

ନୂଆରାଣୀ ରାଜମହଲରେ ପାଦ ଦେଲାଦିନୁ ରାଜା ବଡ଼ରାଣୀଙ୍କୁ ଏକପ୍ରକାର ଭୁଲିଗଲେ । ରାଜକାର୍ଯ୍ୟରେ ଆଉ ମନ ଦେଲେନାହିଁ । ମନ୍ତ୍ରୀ, ସେନାପତି ରାଜ୍ୟ ଚଳାଉଥାନ୍ତି । ବଡ଼ ଦୁଃଖ ଓ ଅଭିମାନରେ ବଡ଼ରାଣୀଙ୍କର ଦିନ କଟୁଥାଏ ।

ବାହାଘରର କିଛି ବର୍ଷ ହୋଇଗଲା । ଦୁଇଟି ରାଣୀ । ଅଥଚ କାହାରି କୋଳରେ ସନ୍ତାନଟିଏ ନାହିଁ । ବଂଶରକ୍ଷା ହେବ କିପରି ? ରାଜାଙ୍କର ମନରେ ସୁଖ ନ ଥାଏ । ଶେଷରେ ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ରାଜା ପୁରୋହିତଙ୍କୁ ଆଦେଶ ଦେଲେ ପୁତ୍ରେଷ୍ଟି ଯଜ୍ଞ କରିବା ପାଇଁ ।

ମହାସମାରୋହରେ ଯଜ୍ଞର ଆୟୋଜନ ହେଲା । ଯଜ୍ଞ ଶେଷରେ ଅଗ୍ନିକୁଣ୍ଡରୁ ଯେଉଁ ଚରୁଅନ୍ନ ମିଳିଲା, ତାହାକୁ ଦୁଇରାଣୀ ଭାଗ କରି ଭୋଜନ କଲେ । ଅଳ୍ପଦିନ ପରେ ଦୁଇରାଣୀ ଗର୍ଭବତୀ ହେଲେ । ବଡ଼ରାଣୀ ମନୋରମାଙ୍କର ପୁତ୍ରର ନାମ ରହିଲା ଭୀମଭଟ୍ଟ । ସାନରାଣୀ ଲାସ୍ୟବତୀଙ୍କର ପୁତ୍ର ସମରଭଟ୍ଟ ନାମରେ ପରିଚିତ ହେଲେ ।

ଚନ୍ଦ୍ରଉଦିଆ ପରି ଦୁଇ ରାଜକୁମାର ବଢ଼ିବାକୁ ଲାଗିଲେ । ରାଜାଙ୍କ ନଅରରେ କେତେ ଆନନ୍ଦ ଉତ୍ସବ ହେଉଥାଏ । ରାଜକୁମାର ଦୁହିଁଙ୍କୁ ଦେଖିଲେ ଆଖି ଲାଖି ରହିଯିବ । ରଜାଘରେ ଅବା କେଉଁ କଥାର ଅପୂର୍ବ । ଯହୁଁ ଯହୁଁ ରାଜକୁମାରଦ୍ୱୟ

ଏଇ ସମୟରେ ବଡ଼ରାଣୀଙ୍କଠାରୁ ଜଣେ ବିଶ୍ୱସ୍ତ ଭୃତ୍ୟ ଆସି ଭୀମଭଞ୍ଜ ପାଖରେ ପହଞ୍ଚିଲା । ସେ ସାଙ୍ଗରେ ଆଣିଥିଲା ଏକ ଧନରତ୍ନ ପେଡ଼ି । ରାଜକୁମାରଙ୍କୁ ପେଡ଼ିଟି ଦେଇ କହିଲା, ''ମହାରାଣୀଙ୍କର ଇଚ୍ଛା ତୁମେ ତୁରନ୍ତ ରାଜ୍ୟ ଛାଡ଼ି ଚାଲିଯାଅ । ରାଜା ତୁମକୁ ବନ୍ଦୀ କରିବା ପାଇଁ ଆଦେଶ ଦେଇ ସାରିଲେଣି । ବିଦେଶରେ ଏ ଧନ ତୁମର କାମରେ ଲାଗିବ ।''

ଭୀମଭଞ୍ଜ ଏବଂ ତାଙ୍କର ବନ୍ଧୁ ଶଙ୍ଖଦତ୍ତ ବିଚାର କଲେ, ''ବାସ୍ତବିକ୍ ଆଉ ଏ ରାଜ୍ୟରେ କ୍ଷଣେମାତ୍ର ରହିବା ନିରାପଦ ନୁହେଁ ।'' ଘୋଡ଼ା ଚଢ଼ି ସେମାନେ ରାଜ୍ୟର ସୀମା ପାରି ହୋଇଗଲେ । ତାପରେ ପଡ଼ିଲା ଏକ ସରବଣ । ସେ ବଣରେ ଖାଲି ସିଂହ ପଲ । ଅଶ୍ୱାରୋହୀ ଦୁଇ ବିଦେଶୀଙ୍କୁ ଦେଖି ସିଂହମାନେ ଦଳବଳ ସହିତ ଆକ୍ରମଣ କଲେ । ଜୀବନ ବିକଳରେ ସେମାନେ ଜଙ୍ଗଲ ପାରି ହୋଇଗଲେ ସିନା, ସିଂହମାନଙ୍କ ଆଘାତରେ ଘୋଡ଼ା ପ୍ରାଣ ପାଇଲେ ନାହିଁ ।

ଜଙ୍ଗଲ ଶେଷରେ ଛୋଟ ପାହାଡ଼ଟିଏ । ସେଠାରେ ଗୋଟିଏ ଗୁମ୍ଫାରେ ଜଣେ ଯୁବକ ସନ୍ନ୍ୟାସୀ ରହୁଥାଆନ୍ତି । ଭୀମଭଞ୍ଜ ଓ ଶଙ୍ଖଦତ୍ତ ସେଠାରେ ବିଶ୍ରାମ ଗ୍ରହଣ କଲେ । ଏତେ ଅଳ୍ପ ବୟସରେ ସେ କାହିଁକି ବୈରାଗ୍ୟ ଆଚରଣ କଲେ ବୋଲି ପଚାରିବାରୁ ସନ୍ନ୍ୟାସୀ କହିଲେ—

''ସନ୍ନ୍ୟାସୀ ହେବା ମୋର ଉଦ୍ଦେଶ୍ୟ ନୁହଁ । ଅଳ୍ପ ବୟସରେ ବାପା ବୋଉଙ୍କୁ ହରାଇଲି । ସଂସାର କରିବା ପାଇଁ କୌଣସି ସମ୍ବଳ ନଥିଲା । ତେଣୁ ଆସି ଏହି ପାହାଡ଼ରେ ଦେବୀଙ୍କୁ ଆରାଧନା କଲି । ଦିନେ ଦେବୀ ସ୍ୱପ୍ନରେ କହିଲେ—''ତୁ ଧୈର୍ଯ୍ୟ ଧରି ଅପେକ୍ଷା କର । ଦିନେ ସରବଣ ଅତିକ୍ରମ କରି ଜଣେ ବିଦେଶୀ ତୋ' ପାଖରେ ପହଞ୍ଚିବେ ଏବଂ ସେ ତୋତେ ସାହାଯ୍ୟ କରିବେ ।''

ରାଜକୁମାର ଏକଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ସେ ନିଜର ରତ୍ନପେଟିକା ଖୋଲି ଯୁବକ ସନ୍ନ୍ୟାସୀଙ୍କୁ ପ୍ରଚୁର ସାହାଯ୍ୟ କଲେ । ସେ ମଧ୍ୟ ସଂସାର ବାନ୍ଧିବା ଉଦ୍ଦେଶ୍ୟରେ ସେ ସ୍ଥାନ ପରିତ୍ୟାଗ କରି ଲୋକାଳୟକୁ ଚାଲିଗଲେ ।

ପାହାଡ଼ ତଳେ ଏକ ଖରସ୍ରୋତା ନଦୀ ବୋହି ଯାଉଥାଏ । କିନ୍ତୁ ସେଠାରେ ପାରିହେବାର କୌଣସି ଘାଟର ବ୍ୟବସ୍ଥା ନ ଥାଏ । ଭୀମଭଞ୍ଜ ଦେଖିଲେ ନଦୀ ପାରି ନ ହେଲେ ବିପଦ ଥାଇପାରେ । ରାଜାଙ୍କର ଅନୁଚରମାନେ ସେମାନଙ୍କୁ ଅନୁସରଣ କରି ଅକ୍ଳେଶରେ ବନ୍ଦୀ କରିପାରନ୍ତି । ତେଣୁ ଦୁଇବନ୍ଧୁ ନଦୀ ବକ୍ଷରେ ପହଁରିବାକୁ ଲାଗିଲେ ।

ପହଁରି ପହଁରି ନଦୀର ମଝିରେ ପହଞ୍ଚିଛନ୍ତି, ହଠାତ୍ ପ୍ରବଳ ସ୍ରୋତର ହାବୁକା ଯୋଗୁ ଦୁଇବନ୍ଧୁ ଅଲଗା ହୋଇଗଲେ । କିଏ କୁଆଡ଼େ ଭାସିଗଲା, ଜାଣିବାର ଉପାୟ ନାହିଁ । କେତେ ସମୟ ପରେ ଭୀମଭଞ୍ଜ କୂଳରେ ଲାଗିଲେ । ପିଠିରେ ତାଙ୍କର

ରତ୍ନପେଟିକା ଓହଳିଥାଏ । ମାତ୍ର ବନ୍ଧୁ ଶଙ୍ଖଦତ୍ତ କାହାନ୍ତି ? ସେ ବଡ଼ ବିକଳ ହୋଇ ଡାକିଲେ ବନ୍ଧୁଙ୍କ ନାଁ ଧରି । ମାତ୍ର କେହି ଜବାବ ଦେଲେ ନାହିଁ ।

ରାଜକୁମାରଙ୍କ ମନରେ ଆସିଲା ଅନୁତାପ । କି ଦୁଃଖରେ ରାଜ୍ୟ ଛାଡ଼ିଲେ । ଏକମାତ୍ର ସାଥୀ ଶଙ୍ଖଦତ୍ତ । ସରବଣରେ ସିଂହମାନଙ୍କ ହାବୁଡ଼ରୁ ଅଳ୍ପକେ ରକ୍ଷା ପାଇଗଲେ । ଏବେ ନଦୀ ଗର୍ଭରେ ବନ୍ଧୁ ହଜିଗଲେ । ସେ ଆଉ କାହାପାଇଁ ଜୀବନ ରଖିବେ ? ମା' ଗଙ୍ଗାକୁ ସ୍ମରଣ କରି ନଦୀଗର୍ଭକୁ ଡେଇଁ ପଡ଼ିଲେ ଜୀବନ ଝାସି ଦେବାପାଇଁ । ଗଙ୍ଗାଦେବୀ ପ୍ରସନ୍ନ ହେଲେ । କୋଳେଇ ଧରିଲେ ରାଜକୁମାର ଭୀମଭଟ୍ଟଙ୍କୁ । କହିଲେ—"ବାବା ! ବ୍ୟସ୍ତ ହୁଅନାହିଁ । ଅଳ୍ପଦିନ ପରେ ତୋର ବନ୍ଧୁ ସହିତ ସାକ୍ଷାତ ହେବ । ତୋର ନିଷ୍ଠାରେ ମୁଁ ପ୍ରସନ୍ନ ହେଲି । ତୋତେ ଗୋଟିଏ ମନ୍ତ୍ର ଶିଖାଇ ଦେଉଛି । ଏହାରି ବଳରେ ତୁ ଇଚ୍ଛା କଲେ ଅଦୃଶ୍ୟ ହୋଇ ରହିପାରିବୁ ।"

ଏତିକି କହି ଦେବୀ ଉଭାନ ହୋଇଗଲେ । ରାଜକୁମାର ଏକାକୀ ବାଟ ଚାଲୁଥାଏ । ସନ୍ଧ୍ୟା ହୋଇ ଆସିଲାବେଳକୁ ସେ ଯାଇ ଲାଟରାଜ୍ୟର ଗୋଟିଏ ସହରରେ ପହଞ୍ଚିଲା । କ୍ରମେ କ୍ରମେ ରାତିର ଅନ୍ଧକାର ମାଡ଼ିଆସୁଛି । ରାଜକୁମାର ଏ ରାଜ୍ୟରେ ସମ୍ପୂର୍ଣ୍ଣ ଅଜଣା । କେଉଁଠି ହେଲେ ଆଶ୍ରୟ ନେବାକୁ ହେବ । ସମୁଦ୍ର କୂଳିଆ ସହର । ସେଇଠି ବାଲି ଉପରେ କ୍ଳାନ୍ତ ହୋଇ ଶୋଇପଡ଼ିଲା । ରାତି ଅଧବେଳକୁ ଗୋଳମାଳ ଶୁଣି ହଠାତ୍ ରାଜକୁମାରର ନିଦ ଭାଙ୍ଗିଗଲା । ସେ ଦେଖିଲା ସମୁଦ୍ରରେ ଜୁଆର ଛାଡ଼ିଯାଇଛି । ମାଛ ଧରିବା ପାଇଁ ଅନେକ ଲୋକ ଲାଗିପଡ଼ିଛନ୍ତି । ତେବେ ମଜାର କଥା ହେଉଛି ଯେ, ଗୋଟିଏ ଛୋଟ ତିମିମାଛ କୂଳରେ ଲାଗିଯାଇଛି । ତାକୁ ଘେରି ରହିଛନ୍ତି ଅନେକ ଲୋକ, ତିମି ମାଛ ପେଟରୁ କାଳେ କିଛି ବାହାରିବ ବୋଲି ତାକୁ ଧୀରେ ଧୀରେ ଚିରା ଯାଉଥାଏ । ରାଜକୁମାର ଭୀମଭଟ୍ଟ ପାଖରେ ଠିଆ ହୋଇ ଲକ୍ଷ୍ୟ କରୁଥାଏ ।

ମାଛର ପେଟ ଚିରିଲା ପରେ ଦେଖାଗଲା ଜଣେ ମଣିଷ ତାର ଚମଡ଼ା ଥଳି ଭିତରେ ବନ୍ଦୀ । ତାର ଦେହରେ ଜୀବନ ଥିଲେ ମଧ୍ୟ ସେ ବେହୋସ ଅବସ୍ଥାରେ ଅଛି । ତାକୁ ଧୀରେ ବାହାର କରାଯାଇ ଚିକିତ୍ସା କରାଗଲା । ପାଖକୁ ଯାଇ ଭୀମଭଟ୍ଟ ଲୋକଟିକୁ ଚିହ୍ନିବାକୁ ଚେଷ୍ଟା କଲା । ସେ ଆଉ କେହି ନୁହେଁ, ତାର ପ୍ରିୟ ବନ୍ଧୁ ଶଙ୍ଖଦତ୍ତ । ଦୁଇବନ୍ଧୁ ଏକାଠି ହେଲେ ।

ଶଙ୍ଖଦତ୍ତ କହିଲା, "ପହଁରୁ ପହଁରୁ ଖରସ୍ରୋତରେ ସେ ମୁହାଣ ଆଡ଼କୁ ଟାଣି ହୋଇଗଲା । ସେଠାରେ ସେ ଅନୁଭବ କଲା ଯେ, ଗୋଟିଏ ମାଂସଥଳିରେ ପଶିଯାଉଛି । ତାପରେ ତାର ଆଉ କିଛି ମନେନାହିଁ । ତାକୁ ଯେ ଏକ ତିମିମାଛ ଗିଳିଦେଉଛି, ତାହା ବର୍ତ୍ତମାନ ଜାଣିଲା । ଯୋଗକୁ ତିମି ଧରାପଡ଼ି ନ ଥିଲେ ସେ ତା'ର ପେଟରେ ଜୀର୍ଣ୍ଣ ହୋଇଯାଇଥାଆନ୍ତା ।"

ଦୁଇ ବନ୍ଧୁ ଗୋଟିଏ ଭଡ଼ାଘର କରି ରହିଲେ । ହାତରେ ତ କିଛି କାମ ନାହିଁ । ମନଇଚ୍ଛା ସହରରେ ବୁଲି ସମୟ କଟାଉଥାନ୍ତି ।

ଦିନକର କଥା । ରାଜନଅର ନିକଟରେ ଗୋଟିଏ ବଡ଼ ପୋଖରୀ । ସେଇ ପୋଖରୀ କୂଳରେ ନାଗରାଜାଙ୍କର ମନ୍ଦିର । ସେଦିନ ନାଗରାଜାଙ୍କର ପର୍ବ । ତେଣୁ ସହରର ଲୋକେ କେତେ ପ୍ରକାର ଫୁଲ ଫଳ ନେଇ ନାଗରାଜାଙ୍କୁ ପୂଜା କରୁଥାନ୍ତି । ରାଜ୍ୟର ରାଜା ଚଣ୍ଡାଦିତ୍ୟ ମହାପ୍ରତାପୀ । ବର୍ଷସାରା ନଅର ପୋଖରୀରେ କେହି ସାଧାରଣ ଲୋକ ଗାଧୋଇବା ମନା । କିନ୍ତୁ ନାଗରାଜାଙ୍କ ପର୍ବ ଦିନ ସମସ୍ତେ ଗାଧୋଇବାର ସୁବିଧା ପାଆନ୍ତି । ତେଣୁ ସେଠାରେ ପ୍ରବଳ ଲୋକ ଗହଳି । ସେଇ ଗହଳି ମଧ୍ୟରେ ରାଜକନ୍ୟା ହଂସାବଳୀ ସଖୀମାନଙ୍କ ଗହଣରେ ଆସିଲା ନାଗରାଜାଙ୍କୁ ପୂଜା କରିବା ପାଇଁ । ପୋଖରୀରେ ଗାଧୋଇଲା ବେଳେ ତାର ଗୋଡ଼ ଖସିଗଲା । ସେ ବୁଡ଼ିଗଲା । ସମସ୍ତେ କେବଳ ହୋ ହଲ୍ଲା କରୁଥାନ୍ତି । କେହି ଭରସି କରି ରାଜକନ୍ୟାକୁ ଉଦ୍ଧାର କରିବା ପାଇଁ ସାହସ ବାନ୍ଧି ପାରୁନଥାନ୍ତି ।

ଏତିକିବେଳେ ରାଜକୁମାର ଭୀମଭଟ୍ଟ ଲୋକ ଗହଳି ମଧ୍ୟରୁ ପୋଖରୀର ଗଭୀର ଜଳ ମଧ୍ୟକୁ ଡେଇଁପଡ଼ିଲା । ଫୁଲତୋଡ଼ାଏ ଟେକିଲା ଭଳି ସେ ରାଜକନ୍ୟାକୁ ଟେକିଆଣି ପାହାଚ ଉପରେ ଶୁଆଇଦେଲା । ସଂସାରରେ ପୁଣି ଏଡ଼େ ସୁନ୍ଦରୀ ଅଛନ୍ତି ! ଭୀମଭଟ୍ଟ ରାଜକୁମାରୀଙ୍କ ରୂପରେ ମୁଗ୍ଧ ହୋଇଗଲା ।

ରାଜକୁମାରୀର ଯେତେବେଳେ ଚେତା ଆସିଲା, ସେ ନିଜର ଜୀବନ ରକ୍ଷାକାରୀଙ୍କର ପରିଚୟ ଜାଣି ଅତ୍ୟନ୍ତ ସୁଖୀ ହେଲା । ରାଜକନ୍ୟା ତାଙ୍କୁ ନିମନ୍ତ୍ରଣ କଲା ରାଜସଭାକୁ । ପିତାଙ୍କୁ କହି ସେ ତାଙ୍କୁ ପୁରସ୍କୃତ କରାଇବ ।

ଭୀମଭଟ୍ଟ ଓ ଶଙ୍ଖଦତ୍ତ ବସାଘରକୁ ଫେରିଆସିଲେ ବିଶ୍ରାମ କରିବା ପାଇଁ । କିନ୍ତୁ ରାଜକୁମାର ଆଖିରେ ନିଦ ଆସୁଛି କେଉଁଠି ? ସେ ଦେବୀଙ୍କର ମନ୍ତ୍ର ବଳରେ ଅଦୃଶ୍ୟ ହୋଇ ରାଜଅନ୍ତଃପୁର ମଧ୍ୟରେ ପ୍ରବେଶ କଲା । ସବୁଠାରେ କଡ଼ା ପହରା । ହେଲେ ତାଙ୍କୁ କେହି ଦେଖିପାରିଲେ ନାହିଁ । ରାଜଜେମା ହଂସାବଳୀଙ୍କର ଶୟନକକ୍ଷ । ତୁଳିତଳ୍ପ ଶେଯରେ ତାଙ୍କର ନିଦ ଆସୁନାହିଁ । ପୋଖରୀରେ ଯେଉଁ ରାଜକୁମାର ତାର ଜୀବନ ରକ୍ଷା କଲେ ତାଙ୍କ ସହିତ ଆଉ ସାକ୍ଷାତ ହେବ ତ !!

ଏତିକିବେଳେ ଘରଭିତରୁ ଶୁଣାଗଲା, "ରାଜକୁମାରୀ, ଏତେ ରାତି ହେଲାଣି । ବିଶ୍ରାମ କରିନାହଁ କାହିଁକି ?"

ରାଜକୁମାରୀ ଆଶ୍ଚର୍ଯ୍ୟ ହେଲା । ଏ ତ ଅବିକଳ ସେହି ସୁଦର୍ଶନ ଯୁବକର ସ୍ୱର । ବୋଧହୁଏ ତାଙ୍କ କଥା ସେ ଭାବୁଛି ବୋଲି ଏହିପରି ବୋଧ ହେଉଛି ।

ପୁନର୍ବାର ଶୁଣାଗଲା, ‘‘ରାଜକୁମାରୀ ! ମୋର ଉପସ୍ଥିତିରେ ତୁମେ ବିରକ୍ତ ହେଉଛ କି ?’’

ଏଥର ରାଜକୁମାରୀ ଅନୁଭବ କଲା, କେହି ଜଣେ ଘରଭିତରେ କଥା କହୁଛି । ସେ କହିଲା, ‘‘ତୁମେ କିଏ ? ମୁଁ ତ ଦେଖିପାରୁ ନାହିଁ ।’’ ରାଜକୁମାର ଜାଣିଲା ଯେ ସେ ଅଦୃଶ୍ୟ ରହିଛି । ମନ୍ତ୍ର ପଢ଼ି ସଙ୍ଗେ ସଙ୍ଗେ ଦୃଶ୍ୟ ହୋଇଗଲା । ରାଜକୁମାରୀର ଆନନ୍ଦ କହିଲେ ନ ସରେ । କେତେ ମଧୁମୟ ଗଳ୍ପ କରି ରାତି ପୁହାଇଦେଲେ । ପାହାନ୍ତା ହେଲାମାତ୍ରକେ ରାଜକୁମାର ଅଦୃଶ୍ୟ ହୋଇ ଚାଲିଆସିଲା । କେହି ଜାଣିପାରିଲେ ନାହିଁ ।

ଏଇମିତି ପ୍ରତିଦିନ ରାତିରେ ରାଜପୁତ୍ର ଭୀମଭଟ୍ଟ ସହିତ ରାଜକୁମାରୀ ହଂସାବଳୀର ସାକ୍ଷାତ ହୁଏ । କେତେ ରଙ୍ଗରସରେ ସେମାନେ ରାତି ପୁହାଇ ଦିଅନ୍ତି । ରାଜକୁମାରୀର ହାବଭାବରେ ପରିବର୍ତ୍ତନ ଦେଖାଦେଲା । ସଖୀମାନେ ସନ୍ଦେହ କଲେ । ସେମାନେ ଅନୁମାନ କଲେ, କେହି ଜଣେ ଗୋପନରେ ରାଜକୁମାରୀ ସହିତ ସାକ୍ଷାତ କରୁଛି । କିନ୍ତୁ ସେମାନେ ତାକୁ ଦେଖିପାରୁନାହାନ୍ତି । ଅତ୍ୟନ୍ତ ଆଶ୍ଚର୍ଯ୍ୟ କଥା । ମାଛି ପଡ଼ିଲେ ନବଖଣ୍ଡ । ରାଜଅନ୍ତଃପୁରକୁ ଦିନରାତି ପ୍ରହରୀ ଜଗି ରହୁଛନ୍ତି । ତେବେ ଏପରି ଅବ୍ୟାପାର କିପରି ହେଉଛି । ଶେଷରେ ସେମାନେ ରାଜାଙ୍କୁ ଗୋପନରେ ଏହି କଥା ଜଣାଇଲେ ।

ରାଜା ଚଣ୍ଡାଦିତ୍ୟ କ୍ରୋଧରେ ଫାଟିପଡ଼ିଲେ । କାହାର ଏତେ ଦୁଃସାହସ ! ରାଜଜେମାଙ୍କ ପୁରରେ ଗୋପନରେ ପ୍ରବେଶ କରୁଛି । ଅଥଚ ପ୍ରହରୀମାନେ ଜାଣିପାରୁ ନାହାନ୍ତି ।

ରାଜା ମନ୍ତ୍ରୀଙ୍କୁ ଡକାଇ ଗୋପନରେ ପରାମର୍ଶ କଲେ ସେଦିନ ରାଜଜେମାଙ୍କ ଅଜାଣତରେ ତାଙ୍କର ଶେଯରେ ଅବିର ବୋଳି ଦିଆଗଲା । ସବୁଦିନ ପରି ପାହାନ୍ତା ପହରୁ ରାଜକୁମାର ଭୀମଭଟ୍ଟ ଯେତେବେଳେ ନଅରରୁ ରାଜପଥରେ ବାହାରିଗଲେ, ରାଜାଙ୍କର ପ୍ରହରୀମାନଙ୍କ ଦ୍ୱାରା ବନ୍ଦୀ ହେଲେ । କାରଣ ତାଙ୍କର ପୋଷାକପତ୍ର ଅବିରରେ ରଙ୍ଗେଇ ହୋଇଯାଇଥିଲା ।

ସକାଳୁ ଦରବାର କକ୍ଷକୁ ରାଜକୁମାର ଭୀମଭଟ୍ଟ ବନ୍ଦୀ ହୋଇ ଆସିଲେ । ରାଜା ଚଣ୍ଡାଦିତ୍ୟ ସିଂହାସନରେ ଆସୀନ । ପାଖରେ ବସିଥାନ୍ତି ରାଜକୁମାରୀ ହଂସାବଳୀ ।

ମନ୍ତ୍ରୀ କହିଲେ—‘‘ଭୀମଭଟ୍ଟ ଗୋପନରେ ରାଜଜେମାଙ୍କ ଅନ୍ତଃପୁରରେ ପ୍ରବେଶ କରି ମହା ଅପରାଧ କରିଛନ୍ତି । ଏହା ଏ ରାଜ୍ୟର ସମ୍ମାନରେ ଆଘାତ ଦେଇଛି । ତେଣୁ ତାଙ୍କୁ ଫାଶୀ ଦିଆଯିବ ।’’

ପ୍ରହରୀମାନେ ହାତକଡ଼ା ପକାଇ ଭୀମଭଟ୍ଟଙ୍କୁ ଫାଶୀଖୁଣ୍ଟ ଆଡ଼କୁ ନେବାକୁ ବସିଲେ । ଏତିକିବେଳେ ରାଜଜେମା ହଂସାବଳୀ ଆସି ଭୀମଭଟ୍ଟଙ୍କ ବାଟ ଆଗୁଳି ଠିଆ ହେଲେ ।

ସେ ପିତାଙ୍କୁ ଉଦ୍ଦେଶ୍ୟ କରି କହିଲେ—''ମହାରାଜ ! ଭୀମଭଟ୍ଟଙ୍କ ସହିତ ମୋତେ ମଧ୍ୟ ଫାଶୀ ଆଦେଶ ହେଉ । ଭୀମଭଟ୍ଟ ମୋତେ ତାଙ୍କ ଜୀବନକୁ ପାଣିଛଡ଼ାଇ ବୁଡ଼ିଯିବା ଅବସ୍ଥାରୁ ରକ୍ଷା କରିଥିଲେ । ରାଜଅନ୍ତଃପୁରରେ ପ୍ରବେଶ କରିବା ପାଇଁ ମୁଁ ତାଙ୍କୁ ଅନୁମତି ଦେଇଥିଲି । ସେହି ଅପରାଧରେ ମୋତେ ଦଣ୍ଡ ଦିଆଯାଉ ।''

ରାଜା ଚଣ୍ଡାଦିତ୍ୟଙ୍କ ଏକମାତ୍ର ସନ୍ତାନ ହଂସାବଳୀ । ତାର ପ୍ରାଣରକ୍ଷକ ଭୀମଭଟ୍ଟଙ୍କୁ ସେ କ୍ଷମା ପ୍ରଦାନ କଲେ । ସେ ଯେତେବେଳେ ଜାଣିପାରିଲେ ଯେ, ଭୀମଭଟ୍ଟ ଜଣେ ସାଧାରଣ ନାଗରିକ ନୁହଁନ୍ତି, ସେ ହେଉଛନ୍ତି ରାଜପୁତ୍ର, ତେଣୁ ଅତ୍ୟନ୍ତ ଆନନ୍ଦରେ ଭୀମଭଟ୍ଟଙ୍କ ହାତରେ ନିଜର ଅଲିଅଳ କନ୍ୟାକୁ ଅର୍ପଣ କଲେ । ଚଣ୍ଡାଦିତ୍ୟ ରାଜକାର୍ଯ୍ୟରୁ ଅବସର ଗ୍ରହଣ କରି ଜାମାତା ଭୀମଭଟ୍ଟଙ୍କୁ ରାଜଗାଦି ଅର୍ପଣ କଲେ ।

ଗୁପ୍ତଚର ପାଖରୁ ସମ୍ବାଦ ମିଳିଲା ଯେ ରାଜା ଉଗ୍ରଭଟ୍ଟ ପରଲୋକ ଗମନ କରିଅଛନ୍ତି । ପିତାଙ୍କ ଶ୍ରାଦ୍ଧ କାର୍ଯ୍ୟରେ ଯୋଗଦେବା ପାଇଁ ସଦଳବଳ ଭୀମଭଟ୍ଟ ନିଜ ରାଜ୍ୟରେ ପହଞ୍ଚିଲେ । ରାଣୀ, ପାରିଷଦବର୍ଗ ଓ ପ୍ରଜାମାନେ ତାଙ୍କୁ ଆଦରରେ ପାଛୋଟି ନେଲେ । ପ୍ରଜାମାନେ ସମରଭଟ୍ଟଙ୍କୁ ଛି ଛି କରୁଥାଆନ୍ତି । ସେତେବେଳକୁ ଅନୁତାପରେ ସେ କାହାକୁ ମୁହଁ ଦେଖାଇ ପାରୁନଥାଏ । ସେ ନିଜେ ଆସି ବଡ଼ଭାଇ ଭୀମଭଟ୍ଟ ପାଖରେ ଶରଣ ପଶିଲା ।

ଦୁଇ ଭାଇ ମିଶି ବାପାଙ୍କର ଶ୍ରାଦ୍ଧକାର୍ଯ୍ୟ ମହାସମାରୋହରେ ଶେଷ କଲେ । ଭୀମଭଟ୍ଟ ସାନଭାଇକୁ ନାନା ଉପଦେଶ ଦେଇ ପିତୃରାଜ୍ୟର ସିଂହାସନରେ ଅଭିଷେକ କରାଇଲେ । ଦଳବଳ ସହ ଫେରିଆସିଲେ ଲାଟ ରାଜ୍ୟକୁ । ବନ୍ଧୁ ଶଙ୍ଖଦତ୍ତ ସେହି ରାଜ୍ୟର ମନ୍ତ୍ରୀ ହେଲେ । ସେମାନେ ସୁଖରେ ପ୍ରଜାପାଳନ କଲେ ।

# ଶାଶୁ-ବୋହୂଙ୍କର କାହାଣୀ



ପ୍ରାଚୀନ କାଳର କଥା । ହସ୍ତିନାପୁର ନାମରେ ଏକ ନଗର ଥିଲା । ଏହା ଥିଲା ରାଜ୍ୟର ରାଜଧାନୀ । ଚାରିଆଡ଼େ ସଉଧମାଳା । ରାଜାଙ୍କର ନଅର ସବୁଠାରୁ ସୁନ୍ଦର । ରାଜାଙ୍କର ପାରିଷଦଗଣ ଏବଂ ସାଧବମାନଙ୍କର ଅଟ୍ଟାଳିକା ଦେଖିଲେ ମନ ପୂରିଉଠିବ । ନଗରର ଛକମାନଙ୍କରେ ସୁନ୍ଦର ପ୍ରମୋଦ ଉଦ୍ୟାନ । ରାଜ୍ୟର ଲୋକମାନଙ୍କର କିଛି ଅଭାବ ନ ଥାଏ । କଠୋର ଶାସନ ହେତୁ ଚୋର ତସ୍କରମାନେ ଉତ୍ପାତ ହେବାକୁ ସାହସ କରନ୍ତି ନାହିଁ ।

ଏହିପରି ଏକ ନଗରରେ ଶିବଦତ୍ତ ବାସ କରୁଥାଆନ୍ତି । ସେ ଜଣେ ପଣ୍ଡିତ ବ୍ରାହ୍ମଣ । ରାଜଦରବାରରେ ମଧ୍ୟ ତାଙ୍କର ଖାତିରି ଥାଏ । ସାଧାରଣ ପ୍ରଜାମାନେ ପଣ୍ଡିତଙ୍କୁ ଭାରି ମାନ୍ୟ କରୁଥାଆନ୍ତି । ପରିବାର କହିଲେ ପଣ୍ଡିତଙ୍କର ସ୍ତ୍ରୀ ଆଉ ତାଙ୍କର ଏକମାତ୍ର ପୁତ୍ର ବସୁଦତ୍ତ ।

ପଣ୍ଡିତ ଶିବଦତ୍ତଙ୍କର ଧନର ଅଭାବ ନ ଥିଲା । ହେଲେ ସେ ଆଦୌ ସୁଖୀ ନ ଥିଲେ । ତାଙ୍କର ସ୍ତ୍ରୀ ଥିଲେ ଅତ୍ୟନ୍ତ ସୁନ୍ଦରୀ, ରୂପଗର୍ବିଣୀ । ସେ କାହାକୁ ସହିପାରୁ ନ ଥିଲେ । ବିନା କାରଣରେ ଛିଦ୍ର କାଢ଼ି କଳି କରିବା ତାଙ୍କର ଅଭ୍ୟାସ ଥିଲା । ଘରେ ବାହାରେ କାହାର ଛାଇ ପଡ଼ିଲେ ତାଙ୍କ ଦେହରେ ନିଆଖୁଣ୍ଟା ଚେଙ୍କି ହୋଇଯାଉଥିଲା ଯେପରି । ସେ ଅଯଥାରେ କଳି କରୁଥିଲେ । ସାହି ପଡ଼ିଶାର ଲୋକଙ୍କ ସହିତ ଏଥିପାଇଁ ତାଙ୍କର ଅପଡ଼ । ସମସ୍ତଙ୍କ ଦୁଆର ତାଙ୍କ ପାଇଁ ବନ୍ଦ । ତାଙ୍କର କଳହ ସ୍ୱଭାବ ଯୋଗୁ ପଣ୍ଡିତଙ୍କ ଘରକୁ ମଧ୍ୟ କେହି ଆସୁନଥିଲେ ।

ଶିବଦତ୍ତ ପ୍ରଥମେ ପ୍ରଥମେ ସ୍ତ୍ରୀଙ୍କୁ ବୁଝାଇବାକୁ ଚେଷ୍ଟା କଲେ । ମାତ୍ର ତାର ପରିଣାମ ହେଲା ବିପରୀତ । ସେ ଅଧିକ କୁପିତା ହୋଇ କାଣ୍ଡଜ୍ଞାନ ହରାଇ ବସୁଥିଲେ । ହାତରେ ଯାହା ଜିନିଷ ପଡୁଥିଲା, ତାହା ସେ ଧ୍ୱଂସ କରିଦେଉଥିଲେ ।

ବଡ଼ ଅଦ୍ଭୁତ ଧରଣର ମହିଳା ସେ ଥିଲେ । ସାରା ସଂସାରକୁ ସେ ଦୋଷୀ ମନେ କରୁଥିଲେ । ତେଣୁ ନିଜର ଇଜ୍ଜତ ରକ୍ଷା କରି ପଣ୍ଡିତ ଶିବଦତ୍ତ ସବୁ ସହିଯିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ପଣ୍ଡିତଙ୍କର ଜୀବନ ଘରଭିତରେ ବଡ଼ ଦୁଃଖରେ କଟୁଥିଲା । ତାଙ୍କର କେବେବେଳେ ହେଲେ ଶାନ୍ତି ନ ଥିଲା । ସେ ଦିନେ ହେଲେ ସୁଖରେ ଭୋଜନ କିମ୍ବା ଶୟନ କରିପାରୁ ନ ଥିଲେ । ସ୍ତ୍ରୀ ତାଙ୍କର ବାଜେଣୀଘଣ୍ଟ । ଚବିଶ ଘଣ୍ଟା ପାଟିଗୋଳ ଚାଲିଥାଏ । ସେଥିପାଇଁ ପଣ୍ଡିତେ ବହୁତ ସମୟ ବାହାରେ ବାହାରେ ବିତାଇ ଦିଅନ୍ତି । ତାହାହେଲେ ମଧ ରକ୍ଷା ନାହିଁ । ଘରକୁ ଫେରିଆସିଲେ ହଜାରେ ଅଭିଯୋଗ ଏବଂ ତାପରେ ଆରମ୍ଭ ହୋଇଯାଏ ଭଙ୍ଗାରୁଜାର ପାଳା ।

ଏକମାତ୍ର ପୁଅ ପାଇଁ ପଣ୍ଡିତଙ୍କର ମହାଚିନ୍ତା । ସେ କ୍ରମଶଃ ବଡ଼ ହେଲା । କାଳେ ମାଆର ସ୍ୱଭାବରେ ପୁଅ ପ୍ରଭାବିତ ହୋଇ ଖରାପ ହୋଇଯିବ, ସେଥିପାଇଁ ସେ ତାକୁ ପିଲାଟିଦିନୁ ଗୁରୁଗୃହକୁ ପଠାଇଦେଲେ । ଗୁରୁଗୃହରେ ବସୁଦତ୍ତ ବର୍ଷ ବର୍ଷ କାଳ ରହି ପାଠ ପଢ଼ିଲା । ସେଠାରେ ବେଦ, ବେଦାନ୍ତ, ଉପନିଷଦ ପ୍ରଭୃତି ନାନା ଶାସ୍ତ୍ର ଅଧ୍ୟୟନ କରିବାକୁ ଲାଗିଲା । ଶେଷରେ ଶାସ୍ତ୍ର ବିଦ୍ୟାରେ ମଧ ପାରଙ୍ଗମ ହେଲା । ଗୁରୁଗୃହରେ ବିଦ୍ୟା ଶେଷ କରି ବସୁଦତ୍ତ ଫେରିଆସିଲା ଘରକୁ । ପଣ୍ଡିତ ଶିବଦତ୍ତ ଅତ୍ୟନ୍ତ ସୁଖୀ ହେଲେ । ଅଳ୍ପଦିନ ମଧରେ ରାଜଦରବାରରେ ପୁଅକୁ ଚାକିରୀ ମଧ ମିଳିଗଲା ।

ଏଣିକି ଯୋଗ୍ୟ ପୁଅକୁ ହାତକୁ ଦି'ହାତ କରିଦେଲେ ସେ ନିଶ୍ଚିନ୍ତ ହେବେ । ତେବେ ନିଜ ସ୍ତ୍ରୀ କଥା ସେ ଜାଣନ୍ତି । ସେ କିପରି ବୋହୂ ଚଳାଇବ ଭଗବାନ ଜାଣନ୍ତି ।

କୁଳୀନ ଘରର ଭଲ ବୋହୂଟିଏ ଠିକ୍ ହେଲା । କେତେ ଆଡ଼ମ୍ବରରେ ପୁଅ ବୋହୂ ଘରକୁ ଆସିଲେ ।

ବୋହୂ ଘରେ ପାଦ ଦେଇ ସାତମଙ୍ଗଳା ନ ଯାଉଣୁ ଶାଶୁଙ୍କର ଅତ୍ୟାଚାର ଆରମ୍ଭ ହୋଇଗଲା । କଣ୍ଟାବାଡ଼ରେ ଲୁଗା ପକାଇ କଳି କରିବା ତାଙ୍କର ସ୍ୱଭାବ ।

ନୂଆ ବୋହୂଟି ସକାଳୁ ଉଠି ବାସିପାଇଟି କାମ ସାରିଦେଇ ବାରିଦୁଆରେ ବିଶ୍ରାମ କରୁଛି, ଶାଶୁ ଆସି ପହଞ୍ଚିଗଲେ । କହିଲେ—''କ'ଣ ରାଣୀଙ୍କର ଘୁମ ଭାଙ୍ଗିଲା ।'' ବୋହୂଟି କିଛି ବୁଝିପାରିଲା ନାହିଁ । ସେ କହିଲା—''ବୋଉ ! ମୁଁ ତ କେତେବେଳୁ ଉଠି ବାସିପାଇଟି କରୁଥିଲି ।'' ଶାଶୁ ତ ଏଇ କଥାକୁ ଅପେକ୍ଷା କରୁଥିଲେ, କହିଲେ—''କ'ଣ କହିଲୁ, ନିମୁଳି ଘର ଝିଅ । ମୋ କଥାରେ ଜବାବ । ଛାଞ୍ଚୁଣୀ ମୁଠାରେ ତୋର ମୁହଁ ଭାଙ୍ଗିଦେବି ।''

ବୋହୂଟି ବିଚରା କାନ୍ଦ କାନ୍ଦ ହୋଇ ଲୁହ ପୋଛିଲା । ଶାଶୁଙ୍କର ଜବାବ ହେଲା—''ସେ ସବୁକେଇ କାନ୍ଦଣା ଆଉ କାହା ଆଗରେ ଦେଖେଇ ହେବୁ । ଫୁଲେଇ ହୋଇ ଭାବିଛୁ ମୋ ପୁଅକୁ କାବୁ କରିବୁ ବୋଲି । ମୋତେ ତୁ ଚିହ୍ନି ନାହୁଁ । ତୋ ରକ୍ତରେ ମୁଁ ଚିତା ଘେନିବି ।''

ବୋହୂ ଏବେ କ'ଣ କରିବ ? କହିଲେ ମଲା, ନ କହିଲେ ମଲା । କାନ୍ଦିବା ହିଁ ସାର ହେଲା । ଦିନପରେ ଦିନ ଶାଶୁଙ୍କର ଅତ୍ୟାଚାର ବଢ଼ିବାରେ ଲାଗିଲା ।

ପଣ୍ଡିତ ଶିବଦତ୍ତ ଅତ୍ୟନ୍ତ ବ୍ୟସ୍ତ ହେଲେ । ତାଙ୍କର ଜୀବନଟା ତ ଦୁଃଖରେ ବିତିଲା । ପୁଅ-ବୋହୂଙ୍କୁ ମଧ୍ୟ ଏ କଳିହୁଡ଼ି ଶାନ୍ତିରେ ରଖାଇ ଦେବନାହିଁ ।

ଦିନେ ଶିବଦତ୍ତ ଅତିଶୟ ବ୍ୟସ୍ତ ହୋଇ ଘର ଛାଡ଼ିଲେ । କାହାକୁ କିଛି କହିଲେ ନାହିଁ । ଗଲାବେଳେ ଶେଯ ଉପରେ ଖଣ୍ଡିଏ ଚିଠି ଲେଖିଯାଇଥିଲେ ।

ତାଙ୍କ ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ ସେଥିରେ ଲେଖାଥିଲା—''ତୁମ ଲାଗି ଘରସଂସାର ଛାଡ଼ି ଚାଲିଯାଉଛି । କୁଆଡ଼େ ଯାଉଛି ନିଜେ ମଧ୍ୟ ଜାଣେ ନାହିଁ । ସାରା ଜୀବନ ତୁମ ଯୋଗୁଁ ଜଳିପୋଡ଼ି କଳବଳ ହେଲି । ସେତେବେଳେ ଘରଛାଡ଼ିବା ସମ୍ଭବ ହେଲାନାହିଁ । କାରଣ ତୁମର ଦାୟିତ୍ୱ କିଏ ନେଇଥାଆନ୍ତା । ଏଣିକି ପୁଅ ବଡ଼ ହେଲା, ଘରସଂସାର ଚଳାଇବା ପାଇଁ ଘରେ ବୋହୂ ପାଦ ଦେଲା । ମୋର ଦାୟିତ୍ୱ ସରିଲା । ତୁମେ ଯାହା କର ପଛକେ ମୋ ପରି ପୁଅ-ବୋହୂକୁ ଆଉ କଳବଳ କରିବ ନାହିଁ । ତାହାହେଲେ ତୁମର ଜୀବନ ସୁଖରେ କଟିଯିବ ।'' ଚିଠିଟି ପଣ୍ଡିତଙ୍କ ସ୍ତ୍ରୀଙ୍କ ହାତରେ ପଡ଼ିଲା । ସେ ତାକୁ ସଙ୍ଗେ ସଙ୍ଗେ ନଷ୍ଟ କରି ପଣ୍ଡିତଙ୍କ ଉପରେ ନିଆଁବାଣ ହେବେ । ପାଖରେ ପାଇଲେ ସତେ ଅବା କଡ଼ କଡ଼ କରି ଚୋବାଇଦେବେ । ହଁ, ଏତେ ସାହସ । ମୁଁ ପୁଣି କଳବଳ କଲି । ପଳାଇ ତ ଗଲା । ନଚେତ୍ ମୋର ଦିନେ କୁ ତା'ର ଦିନେ ।

ପଣ୍ଡିତିଆଣୀଙ୍କର କିଛି ପରିବର୍ତ୍ତନ ହେଲାନାହିଁ । ବରଂ ଦିନକୁ ଦିନ ବୋହୂ ଉପରେ ଅତ୍ୟାଚାର ବଢ଼ିବାକୁ ଲାଗିଲା । ବୋହୂ ଆଉ କେତେ ସହିବ ! ସ୍ୱାମୀ ଆଗରେ ଆପତ୍ତି କଲା ।

ବସୁଦତ୍ତ କହିଲେ, ''ମୁଁ ବୋଉର ସ୍ୱଭାବ ସହିତ ପିଲାଟି ଦିନରୁ ପରିଚିତ । କ'ଣ କରିବା ! ବୋଉକୁ କ'ଣ ବିଦାୟ କରିଦେଇ ପାରିବା ! ଲୋକେ କ'ଣ କହିବେ !! ସବୁ ସହ୍ୟ କରିବାକୁ ହେବ ।

ବୋହୂ ଦିନେ କାହାକୁ କିଛି ନ କହି ବାପଘରକୁ ଚାଲିଗଲା । ଆଉ ଫେରିବାଟ ନାଁ ଧରିଲା ନାହିଁ ।

ବୋହୂ ଘର ଛାଡ଼ିଲା ପରେ ଶାଶୁର କିଛି ପରିବର୍ତ୍ତନ ହେଲାନାହିଁ । ଓଲଟି ସାହିପଡ଼ିଶାରେ କହି ବୁଲିଲା—''ମୁଁ ଜାଣେ ପରା ! ବାରବୁଲି ଛତରଖାଇକୁ ଘର କୁଆଡ଼େ ସୁଖ ଲାଗିବ ? ଏମାନେ ପୁଣି ଘରସଂସାର କରିବେ ! ଏଉଟା ଗଲା ନାହିଁ ଯେ କଣ୍ଟା ଗଲା ?''

ବସୁଦତ୍ତ ସବୁ ନୀରବରେ ସହ୍ୟ କଲେ । ସେ ଜାଣନ୍ତି, ତାଙ୍କ ସ୍ତ୍ରୀଙ୍କର କିଛି ଦୋଷ ନ ଥିଲା । ବୋଉର ବ୍ୟବହାରରେ ବାପା ଘର ଛାଡ଼ିଲେ । ସ୍ତ୍ରୀ ମଧ୍ୟ ଗଲା । ସଂସାର ପ୍ରତି ତାଙ୍କର ମନ ରହିଲା ନାହିଁ । ଜ୍ଞାତିକୁଟୁମ୍ବ ବସୁଦତ୍ତଙ୍କୁ ବୁଝାଇ ସୁଝାଇ ଆଉ ଗୋଟିଏ ବୋହୂ ଆଣିବା ପାଇଁ କହିଲେ ।

ଦିନେ ସନ୍ଧ୍ୟାବେଳେ ବସୁଦତ୍ତ ବର ବେଶରେ ଶଗଡ଼ଗାଡ଼ିରୁ ଓହ୍ଲାଇଲେ । ଶଗଡ଼ଗାଡ଼ିରୁ ଏକପ୍ରକାର ବୋହୂଟିକୁ କୋଳ କରି କୁଦାଇ ଘର ଭିତରକୁ ନେଇଗଲେ । ବୋହୂଟି ଶାଢ଼ୀ ଘୋଡ଼ି ହୋଇ ଶୋଇଲାଘରେ ବସିଥାଏ ।

ବୋଉ ପଚାରିଲେ, ''କିରେ ପୁଅ ! ଏହି ଝିଅଟି କିଏ ?'' ବସୁଦତ୍ତ କହିଲେ, ''ବୋଉ, ଏ ତୋର ଆଉ ଗୋଟିଏ ବୋହୂ । ଦୋଡ଼ ବାହା ଯୋଗୁଁ ତୋଳାକନ୍ୟା କରିନେଇ ଆସିଲି ।''

ବୋଉ କହିଲେ—''ଏପରି ଘୋଡ଼ି ହୋଇ ବସିଛି କାହିଁକି ?'' ବସୁଦତ୍ତ କହିଲେ—''ସେ ଭାରି ଲାଜକୁଳି । କିଛିଦିନ ଚଳିଗଲେ ତୋ ସହିତ ମିଶିବାରେ ଅସୁବିଧା ହେବନାହିଁ ।''

ଏଇମିତି କିଛିଦିନ ଚାଲିଗଲା । ବସୁଦତ୍ତ ବାହାରକୁ ଗଲେ ବୋହୂଟିକୁ ଘରେ ଚାବିପକାଇ ଯାଆନ୍ତି । ବୋହୂଟି କିପରି, ତାହା ଆଉ ଶାଶୁଙ୍କର ଜାଣିବାର ଉପାୟ ନ ଥାଏ । ତେବେ ଘର ବାହାରେ ଥାଇ ବୋହୂ ଉପରେ ଗାଳିବର୍ଷଣ ହୁଏ । ଦେଖାଇ ଶିଖାଇ କେତେ କଟାକ୍ଷ କରାଯାଏ । କିନ୍ତୁ କିଛି ଜବାବ ମିଳେ ନାହିଁ । ଏଥିରେ ଶାଶୁଙ୍କ ଦେହରେ ଚିଆଁ ଲାଗିଯାଏ ।

'ହଁ ଏଡ଼େ ଗରବ । ବଡ଼ଲୋକି ଦେଖେଇ ହେଉଛି । ମୋତେ ଖାତିରି ଆସୁନାହିଁ । କଥା କହିଲେ ଜବାବ ମିଳୁନାହିଁ । ସେରନ୍ତାପଣ ଦେଖେଇ ହେଉଛି । ମୁଁ ବୁଢ଼ୀମଣିଷ, ଖଟି ଖଟି ମଲିଣି । ସାଆନ୍ତାଣୀ ସାଜିଛି । ହଉ, ବେଳ ଆସୁ, ତୋର ଦିନେ କି ମୋର ଦିନେ ।'

ଏଇମିତି ସବୁଦିନ ଶାଶୁ ବକ୍ ବକ୍ ହୁଅନ୍ତି, ହେଲେ କିଛି ଜବାବ ମିଳେନାହିଁ ।

ଦିନେ ପୁଅ କଚେରି ଗଲାବେଳେ ଭୁଲ୍‌ରେ ଶୋଇଲା ଘର ଝରକା ଖୋଲିଦେଇ ଯାଇଥିଲେ । ଶାଶୁ ଝରକାରେ ମୁହଁ ଗଳାଇ ଦେଖିଲେ, ବୋହୂଟି ମୁହଁ ଘୋଡ଼ାଇ ବସିଛି । ମନଇଚ୍ଛା ଗାଳିଦେଇ ନିଜ ମୁଣ୍ଡଟାକୁ ଝରକାରେ ପିଟିଦେଲେ । ମୁଣ୍ଡରୁ

ଧାର ଧାର ହୋଇ ରକ୍ତ ବୋହି ଚାଲିଲା । ଦାଣ୍ଡଦୁଆର ଖୋଲି ସେ ହଲା କଲେ, 'ବୋହୂଟା ମୋତେ ମାରି ପକାଇଲା ।'

ସାହି ପଡ଼ିଶା ଲୋକେ ଜମା ହୋଇଗଲେ । ସମସ୍ତେ ହା ହା କଲେ । ସମସ୍ତଙ୍କର ବୋହୂ ଉପରେ ନିନ୍ଦା । କେହି କିଛି ବୁଝିବାକୁ ନାହିଁ । କେତେ ସମୟ ପରେ ପୁଅ ବସୁଦତ୍ତ ଫେରିଆସିଲେ । ତାଙ୍କ ଆଗରେ ସମସ୍ତେ ବୋହୂ ବିରୁଦ୍ଧରେ କହିବାକୁ ଲାଗିଲେ । ବସୁଦତ୍ତ କାହାକୁ କିଛି ନ କହି ଶୋଇଲା ଘରର ଚାବି ଖୋଲିଦେଲେ । କେହି ତ ଆଗରୁ ବୋହୂର ଛାଇ ଦେଖି ନ ଥିଲେ । ସମସ୍ତେ ଏକାବେଳକେ ଶୋଇଲାଘରେ ପଶିଗଲେ ।

ବସୁଦତ୍ତଙ୍କ ବୋଉ ଆଗକୁ ଯାଇ ବୋହୂର ମୁଣ୍ଡରୁ ଶାଢ଼ୀଟା ଟାଣିଦେଲେ । ସମସ୍ତେ କାବା ! ଏ କ'ଣ ? ଏ ତ ଗୋଟାଏ କାଠର ପିତୁଳା !! ସେ କିପରି ଶାଶୁକୁ ମାରିବ ?

ଜ୍ଞାତି-କୁଟୁମ୍ବ ବସୁଦତ୍ତଙ୍କ ଆଡ଼କୁ କାବା ହୋଇ ଚାହିଁଥାଆନ୍ତି । ସେ କହିଲେ—''ବୋଉର ଅତ୍ୟାଚାରରେ ମୋର ସ୍ତ୍ରୀ ଏ ଘର ଛାଡ଼ି ଚାଲିଗଲା । ବାପା ତୀର୍ଥବାସୀ ହେଲେ । ମୋତେ ଆଉ କିଏ କନିଆଁ ଦେବ ? ବୋଉ ବିରୁଦ୍ଧରେ କହିଲେ କିଏ ଅବା ବିଶ୍ୱାସ କରିବ ? ଆପଣମାନେ ଯେତେବେଳେ ମୋତେ ବାଧ କଲେ ବିଭା ହେବା ପାଇଁ, ମୁଁ ଛଳନା କରି ଏହି ଉପାୟ କଲି । ବୋହୂ ପଛକେ ଏ ଘରେ ନ ରହୁ, ବୋଉ ହେଲେ ଶାନ୍ତିରେ ରହୁ । ତାହା ମଧ ସମ୍ଭବ ହେଲାନାହିଁ ।''

ଏତେଦିନକେ ସମସ୍ତେ ଶାଶୁଙ୍କର ସ୍ୱରୂପ ବୁଝିପାରିଲେ । ସମସ୍ତେ ଛି ଛି କଲେ । ମୁହଁ ମୋଡ଼ିଦେଇ ଯେଝା ଘରକୁ ଫେରିଗଲେ ।

ବସୁଦତ୍ତଙ୍କର ବୋଉ ଲାଜ, ଅପମାନ ଓ ଅନୁଶୋଚନାରେ ଝାଉଁଳି ପଡ଼ିଲେ । ସତେ ତ ! ତାଙ୍କରି ପାଇଁ ଘରଟା ଛାରଖାର ହୋଇଗଲା । ସ୍ୱାମୀ ଛାଡ଼ି ପଳାଇଲେ । ବୋହୂ ରହିପାରିଲା ନାହିଁ । ଏକମାତ୍ର ପୁଅକୁ ମଧ ସୁଖ ଦେଇପାରିଲେ ନାହିଁ । ଆଉ କାହାକୁ ସେ ମୁହଁ ଦେଖାଇବେ । ସେ ମଧ ରାତି ଅନ୍ଧାରରେ ଘରଛାଡ଼ି କୁଆଡ଼େ ଗଲେ କେହି ଜାଣିପାରିଲେ ନାହିଁ ।

ଏଣିକି ବସୁଦତ୍ତ ଆଉ ଗୋଟିଏ ବାହା ହୋଇ ସୁଖରେ ଘରଦୁଆର କରି ରହିଲେ ।



# ଜୀମୂତବାହନ ଓ ସର୍ପକୁମାର

ପୁରାଣ ଯୁଗର କଥା । କାଞ୍ଚନପୁର ନାମରେ ଏକ ରାଜ୍ୟ ଥିଲା । ସେଠାରେ ରାଜୁତି କରୁଥିଲେ ରାଜା ଜୀମୂତକେତୁ । ରାଣୀଙ୍କର ନାଁ ହେଲା କନକବତୀ । ରାଜାଙ୍କ ଶାସନରେ ପ୍ରଜାମାନେ ସୁଖରେ କାଳ କାଟୁଥାଆନ୍ତି । ରାଜାଘରେ ଅବା ଅଭାବ କ'ଣ ? ତଥାପି ରାଜାରାଣୀଙ୍କ ମନରେ ସୁଖ ନଥାଏ । ତାଙ୍କ କୋଳରେ ପୁଅଟିଏ ନାହିଁ । ତାଙ୍କ ଅନ୍ତେ ଏତେ ବଡ଼ ରାଜ୍ୟର ଉତ୍ତରାଧିକାରୀ କିଏ ହେବ ? ବୃଦ୍ଧ ବୟସରେ କିଏ ତାଙ୍କର ଦେଖାଚାହାଁ କରିବ ?

ରାଣୀ କେତେ ଉପବାସ ଓ ମାନସିକ କଲାପରେ ପୁଅଟିଏ ହେଲା । ରାଜମହଲରେ କେତେ ଉତ୍ସବର ଆୟୋଜନ ହେଉଥାଏ । ସମସ୍ତେ ସୁଖୀ ହେଉଥାଆନ୍ତି । ରାଜାରାଣୀ ପୁଅର ନାଁ ରଖିଲେ ଜୀମୂତବାହନ ।

ରାଜକୁମାର ଚନ୍ଦ୍ରଉଦିଆ ପରି ବଢ଼ିବାକୁ ଲାଗିଲେ । ରୂପରେ ଯେମିତି, ଗୁଣରେ ମଧ୍ୟ ସେମିତି । ରାଜାପୁଅ ହେଲେ କ'ଣ ହେଲା, ଅତ୍ୟନ୍ତ ଧୀର, ସୁଶୀଳ ଏବଂ ପରୋପକାରୀ । ମନରେ ଗର୍ବ ବୋଲି ଟିକିଏ ନାହିଁ । ରାଜକୁମାର ସବୁ ବିଦ୍ୟାରେ ନିପୁଣ ହେଲେ ।

ଦିନେ ମହାରାଜା ଜୀମୂତକେତୁ ରାଜକୁମାର ଜୀମୂତବାହନକୁ ଯୁବରାଜ ପଦରେ ବରଣ କଲେ । ମନ୍ତ୍ରୀ ଆସି ଯୁବରାଜଙ୍କୁ ବେଳେ ବେଳେ ରାଜନୀତି ସମ୍ପର୍କରେ ଶିକ୍ଷା ଦେଉଥାଆନ୍ତି । ଦିନେ ମନ୍ତ୍ରୀ ରାଜକୁମାରଙ୍କୁ କହିଲେ—''ଯୁବରାଜ ! ଆପଣଙ୍କ ରାଜ ଉଦ୍ୟାନରେ କଳ୍ପବୃକ୍ଷ ରହିଛି । ସେଥିପାଇଁ ଏହି ରାଜବଂଶ ଅତ୍ୟନ୍ତ ଭାଗ୍ୟବାନ୍ । କଳ୍ପବୃକ୍ଷକୁ ପୂଜା କରି ଯାହା ପ୍ରାର୍ଥନା କରାଯାଏ, ସେ ତାହା ପୂରଣ କରେ । ସେଥିପାଇଁ ଏହି ରାଜ୍ୟକୁ ଶତ୍ରୁମାନେ ଆକ୍ରମଣ କରିବାକୁ ସାହସ କରନ୍ତି ନାହିଁ ।''

ଏହି କଥା ଶୁଣି ରାଜକୁମାରଙ୍କ ମୁଖରେ ହସ ଫୁଟିଉଠିଲା । ପୁନଶ୍ଚ ଦୁଃଖରେ ସେ ଝାଉଁଳି ପଡ଼ିଲେ । ମନ୍ତ୍ରୀଙ୍କର ସାହସ ହେଲା ନାହିଁ କିଛି ପଚାରିବା ପାଇଁ । ସେ ଯାଇ ମହାରାଜାଙ୍କୁ ରାଜକୁମାରଙ୍କ ବ୍ୟବହାର ବିଷୟରେ କହିଲେ । ମହାରାଜା ଜୀମୂତକେତୁ ବିଚଳିତ ହେଲେ । 'କଳ୍ପବୃକ୍ଷ' ବିଷୟ ଶ୍ରବଣରେ ରାଜକୁମାରଙ୍କର ଭାବାନ୍ତର କାହିଁକି ?

ସେ ତାଙ୍କୁ ଡକାଇ ପଠାଇଲେ । ରାଜକୁମାର ଆସି ପିତାଙ୍କୁ ପ୍ରଣାମ୍ କରିବା ମାତ୍ରକେ ରାଜା ପଚାରିଲେ—''ଯୁବରାଜ ! କଳ୍ପବୃକ୍ଷ କଥା ଶ୍ରବଣ କରି ତୁମେ ଆନମନା ହେଲ କାହିଁକି ?''

ଜୀମୂତବାହନ କହିଲେ—"ପିତା ! ଯେଉଁ ରାଜ୍ୟରେ କଳ୍ପବୃକ୍ଷ ଅଛି, ସେହି ରାଜବଂଶରେ ଜନ୍ମଗ୍ରହଣ କରିଥିବାରୁ ମୁଁ ନିଜକୁ ଧନ୍ୟ ମନେକଲି । ମାତ୍ର ପର ମୁହୂର୍ତ୍ତରେ ମୋର ମନରେ ଅତ୍ୟନ୍ତ ଦୁଃଖ ଉପସ୍ଥିତ ହେଲା । କାରଣ ନଗର ବୁଲି ମୁଁ ଦେଖିଛି, ଆମ ରାଜ୍ୟରେ ଅନେକ ଦୁଃଖୀ ଲୋକ ଅଛନ୍ତି । କଳ୍ପବୃକ୍ଷର ଅଧିକାରୀ ହୋଇ ମଧ୍ୟ ପ୍ରଜାମାନଙ୍କର ଦୁଃଖ ଦୂର କରିବା ପାଇଁ କେହି କେବେ ଉଦ୍ୟମ କରିନାହାନ୍ତି । ସେଥିପାଇଁ ମନଟା ମୋର ବିଚଳିତ ହେଲା ।"

ମହାରାଜ ଜୀମୂତକେତୁ କହିଲେ—"ରାଜକୁମାର ! ତୁମ ପରି ପୁତ୍ରରତ୍ନ ଲାଭ କରି ମୁଁ ଗର୍ବ ଅନୁଭବ କରୁଛି । ପ୍ରତ୍ୟେକେ ନିଜର ବୁଦ୍ଧି ଅନୁସାରେ କାର୍ଯ୍ୟ କରନ୍ତି ଏବଂ ରାଜ୍ୟ ଓ ରାଜବଂଶର କଲ୍ୟାଣ ସାଧନ କରନ୍ତି । ତୁମେ ବର୍ତ୍ତମାନ ଯୁବରାଜ । ରାଜ୍ୟର ମଙ୍ଗଳ କରିବା ପାଇଁ କଳ୍ପବୃକ୍ଷ ସାହାଯ୍ୟରେ ତୁମେ ଯେକୌଣସି ପନ୍ଥା ଗ୍ରହଣ କରିପାର । ଏଥିପାଇଁ ତୁମେ ସ୍ୱାଧୀନ ।"

ଜୀମୂତବାହନ କହିଲେ—"ବାବା ! ଆମର ପୂର୍ବପୁରୁଷଗଣ କଳ୍ପବୃକ୍ଷ ସାହାଯ୍ୟରେ ପ୍ରଚୁର ଧନରତ୍ନ ଭଣ୍ଡାର ଘରେ ସାଇତି ରଖିଛନ୍ତି । ସେମାନେ କେତେଦିନ ଅବା ଭୋଗ କଲେ । ଏହି ଜୀବନ ଅଳ୍ପକାଳ ସ୍ଥାୟୀ । ଧନ, ସମ୍ପତ୍ତି, ଐଶ୍ୱର୍ଯ୍ୟ, କ୍ଷମତା, କେହି ସବୁଦିନ ରହିବେ ନାହିଁ । ଆମେ ଏପରି କିଛି କାର୍ଯ୍ୟ କରିବା, ଯହିଁରେ ପ୍ରଜାକୁଳ ସୁଖ ଆଉ ଶାନ୍ତିରେ ଚିରଦିନ ରହିବେ ।"

ରାଜା କହିଲେ, "ତୁମର ବିଚାର ଉତ୍ତମ । ତୁମେ ଯେକୌଣସି ଭଲ କାର୍ଯ୍ୟ କରିବ, ସେଥିରେ ମୋର ପୂର୍ଣ୍ଣ ସମର୍ଥନ ରହିଛି ।"

ପିତାଙ୍କର ଆଶୀର୍ବାଦ ଲାଭ କରି ଜୀମୂତବାହନ ରାଜଉଦ୍ୟାନରେ କଳ୍ପତରୁ ବୃକ୍ଷ ପାଖରେ ପହଞ୍ଚିଲେ । ଅତ୍ୟନ୍ତ ଭକ୍ତିରେ ବୃକ୍ଷକୁ ପୂଜା କରି ପ୍ରାର୍ଥନା କଲେ—"ହେ ବୃକ୍ଷରାଜ ! ତୁମେ ଆଜି ପର୍ଯ୍ୟନ୍ତ ରାଜବଂଶର ରକ୍ଷାକର୍ତ୍ତା ହୋଇଆସିଛ । ମୋର ନିବେଦନ, ଏଣିକି ତୁମର ଆଶୀର୍ବାଦ ପ୍ରଜାକୁଳ ଉପରେ ବର୍ଷିତ ହେଉ ।"

କଳ୍ପବୃକ୍ଷ କହିଲେ—"ରାଜକୁମାର ! ତୁମର ଅଭିଳାଷ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ଏଥିରେ ଏକ ବିପଦ ରହିଛି । ତୁମର ଏପରି ଇଚ୍ଛା ପୂରଣ କଲେ ମୁଁ ଆଉ ରାଜଉଦ୍ୟାନରେ ରହିପାରିବି ନାହିଁ । ମୁଁ ଥିବାରୁ ରାଜବଂଶ ନିରାପଦ୍ ରହିଛି । ମୋର ଅନୁପସ୍ଥିତିରେ ରାଜ୍ୟ ପ୍ରତି ଶତ୍ରୁଭୟ ରହିପାରେ ।"

ଜୀମୂତବାହନ କହିଲେ—"ହେ ବୃକ୍ଷଦେବତା ! ବହୁଜନ ହିତାୟ ସୌଭାଗ୍ୟ କାହାଁକୁ ମିଳେ । ନିଜ ଦୁଃଖର ବିନିମୟରେ ଯଦି ବହୁ ଲୋକ ସୁଖୀ ହୁଅନ୍ତି, ତାହା ଅତ୍ୟନ୍ତ ପ୍ରୀତିଦାୟକ ହେବନାହିଁ କି ?"

ବୃକ୍ଷଦେବତା ରାଜକୁମାରକୁ ପଚାରିଲେ—''ଏବେ ତୁମର ମନର କଥା ଖୋଲି କରି କହ ।''

ଜୀମୂତବାହନ କହିଲେ, ''ହେ କଳ୍ପବୃକ୍ଷ ! ଆପଣ ଏପରି ଆଶୀର୍ବାଦ କରନ୍ତୁ, ଯହିଁରେ ଏହି ରାଜ୍ୟରେ କେହି ଦୁଃଖରେ ରହିବେ ନାହିଁ । ସମସ୍ତଙ୍କ ଘର ଧନଧାନ୍ୟରେ ପୂର୍ଣ୍ଣ ହୋଇଯିବ ।''

କଳ୍ପବୃକ୍ଷର ଦେବତା 'ତଥାସ୍ତୁ' କହି ଅନ୍ତର୍ଦ୍ଧାନ ହୋଇଗଲେ । ରାଜ୍ୟର ଅବସ୍ଥା ବଦଳିଗଲା । ସମସ୍ତଙ୍କ ଘରେ ଧନରତ୍ନ ଯାହାକୁ ଯେତେ । ସମସ୍ତେ ଜାଣିଲେ କେବଳ ରାଜକୁମାରଙ୍କ ଯୋଗୁଁ ଏପରି ସୌଭାଗ୍ୟ ଫେରିଆସିଲା । ଚାରିଆଡ଼େ ଜୀମୂତବାହନଙ୍କୁ ପ୍ରଜାକୁଳ ଧନ୍ୟ ଧନ୍ୟ କରୁଥାଆନ୍ତି ।

ଏହି ଖବର ଅଛପା ରହିଲା ନାହିଁ । ପଡ଼ୋଶୀ ଶତ୍ରୁ ରାଜାମାନେ ଖବର ପାଇଗଲେ ଯେ, କଳ୍ପବୃକ୍ଷ ଅନ୍ତର୍ଦ୍ଧାନ ହୋଇଯାଇଛି । ଏହି ସୁଯୋଗରେ ସେମାନେ ଜୀମୂତକେତୁଙ୍କ ରାଜ୍ୟ ଆକ୍ରମଣ କରିବା ପାଇଁ ମସୁଧା କଲେ । ଗୁପ୍ତଚର ମୁଖରୁ ଶତ୍ରୁ ରାଜାମାନଙ୍କର ଯୁଦ୍ଧ ଅଭିଯାନ ଖବର ପାଇ ରାଜା ସେନାପତିଙ୍କୁ ଆଦେଶ ଦେଲେ ପ୍ରସ୍ତୁତ ରହିବା ପାଇଁ । ରାଜ୍ୟସାରା ଯୁଦ୍ଧର ଆୟୋଜନ ଚାଲିଲା । ପ୍ରଜାମାନେ ମଧ୍ୟ ଦୃଢ଼ ପରିକର ହେଲେ, ନିଜର ଜୀବନ ବିନିମୟରେ ରାଜବଂଶର ସମ୍ମାନ ରକ୍ଷା କରିବା ପାଇଁ ।

ଏହି ଖବର ରାଜକୁମାର ଜୀମୂତବାହନ ଶୁଣିଲା ପରେ ନୀରବ ରହିପାରିଲା ନାହିଁ । ସେ ଆସି ପିତାଙ୍କ ପାଖରେ ବିନୀତ ଭାବରେ ନିବେଦନ କଲା—''ମହାରାଜ ! ଏ ଯୁଦ୍ଧ ଆୟୋଜନ କାହାର ସ୍ୱାର୍ଥ ପାଇଁ । ଏଥିରେ ଅଯଥାରେ ନିରୀହ ପ୍ରଜାକୁଳ ମୃତ୍ୟୁର ଶିକାର ହେବେ । କେତେ ଜାୟା, ଜନନୀଙ୍କର ବୁକୁଫଟା କ୍ରନ୍ଦନ ଶୁଣିବାକୁ ମିଳିବ । ସେମାନେ ସ୍ୱାମୀହରା ଓ ସନ୍ତାନହରା ହୋଇ ଦୁଃଖରେ ଜୀବନଯାପନ କରିବେ । କାହାର ସୁଖ ପାଇଁ ଏ ଯୁଦ୍ଧ ହେବ ।''

''ଜଣେ କେହି ସିଂହାସନ ଅଧିକାର କରିବ । ଆମେ ନ ବସିଲେ ଏ ପୃଥିବୀର କିଛି ପରିବର୍ତ୍ତନ ହୋଇଯିବ ନାହିଁ । ସୂର୍ଯ୍ୟ, ଚନ୍ଦ୍ର ଆକାଶରେ ଠିକ୍ ସମୟରେ ଉଦିତ ହେବେ । ପବନ ଉଚିତ ମାର୍ଗରେ ପ୍ରବାହିତ ହେବ । ତେବେ ଏ ନରସଂହାର ଲୀଳାର ଆୟୋଜନ କାହିଁକି ? ଏ ଭୋଗବିଳାସ କେତେଦିନ ପାଇଁ ? ଚାଲନ୍ତୁ, ଏ ରାଜ୍ୟ ଛାଡ଼ି ଆମେ ଅରଣ୍ୟବାସ କରିବା । ପ୍ରଜାମାନେ ସୁଖ ଓ ଶାନ୍ତିରେ ରହନ୍ତୁ ।''

ରାଜ୍ୟର ସୀମାରେ ମଳୟ ପର୍ବତ । ସେଠାରେ ଖାଲି ଚନ୍ଦନ ଗଛର ବଣ । ସେହି ବଣରେ ଏକ ପାହାଡ଼ିଆ ଝରଣା କୂଳରେ କୁଡ଼ିଆ ତିଆରି ହେଲା । ରାଜା ରାଣୀଙ୍କ ସହିତ ଜୀମୂତବାହନ ସେହିଠାରେ ଅବସ୍ଥାନ କଲେ । ପ୍ରକୃତିର ଶାନ୍ତିମୟ କୋଳରେ ସେମାନଙ୍କର ସମୟ ବିତିଯାଉଥାଏ । ବାସ୍ତବିକ, ରାଜମହଲର ଐଶ୍ୱର୍ଯ୍ୟ ମଧ୍ୟରେ ରାଜାରାଣୀ ଏତେ ଶାନ୍ତି ପାଇ ନ ଥିଲେ ।

ମଳୟପର୍ବତ ପାଦଦେଶରେ ଗୋଟିଏ ରାଜ୍ୟ ଥିଲା । ସେହି ରାଜ୍ୟର ରାଜା ଥିଲେ ବିଶ୍ୱାବସୁ । ଦିନେ ରାଜା ବିଶ୍ୱାବସୁଙ୍କର ପୁତ୍ର ରାଜକୁମାର ମିତ୍ରାବସୁ ଶିକାର କରିବାକୁ ଆସି ଅଚାନକ ଝରଣାକୂଳରେ ପହଞ୍ଚିଲେ । ସେଠାରେ ରାଜକୁମାର ଜୀମୂତବାହନ ବିଶ୍ରାମ କରୁଥିଲେ । ଆତ୍ମପରିଚୟ ଛଳରେ ଦୁଇ ରାଜକୁମାର ପରସ୍ପର ଆପଣାର ହୋଇଗଲେ ।

ଜୀମୂତବାହନ ବନ୍ଧୁ ମିତ୍ରାବସୁଙ୍କୁ ସାଙ୍ଗରେ ନେଇ ଝରଣାକୂଳରେ ଥିବା ନିଜ କୁଟୀରରେ ପହଞ୍ଚିଲେ । ସେଠାରେ ଅରଣ୍ୟବାସୀ ରାଜା ଜୀମୂତକେତୁ ଏବଂ ରାଣୀ କନକବତୀ ସହିତ ଅବସ୍ଥାନ କରୁଥାନ୍ତି । ପୁତ୍ରଠାରୁ ମିତ୍ରାବସୁର ପରିଚୟ ପାଇ ସେମାନେ ତାକୁ କେତେ ଆଦର କଲେ । ଫଳମୂଳ ଖାଇବାକୁ ଦେଲେ । ସେମାନଙ୍କର ଅକପଟ ବ୍ୟବହାରରେ ମିତ୍ରାବସୁ କିଛି ସମୟ ପାଇଁ ରାଜପୁରୀର ସୁଖ ଭୁଲିଗଲା ।

ରାଜ ନଅରକୁ ଫେରିଆସି ମିତ୍ରାବସୁ ନିଜର ପିତାମାତାଙ୍କ ଆଗରେ ସମସ୍ତ ଅଭିଜ୍ଞତା ବର୍ଣ୍ଣନା କଲା । ରାଜା ବିଶ୍ୱାବସୁ ଏପରି ତ୍ୟାଗୀ ରାଜପରିବାରର କଥା ଶୁଣି ଆଚମ୍ବିତ ହେଲେ । ସେ ମନେ ମନେ ଚିନ୍ତା କଲେ, ରାଜକୁମାର ଜୀମୂତବାହନ ତାଙ୍କର ଅଲିଅଳ କନ୍ୟା ମଳୟବତୀକୁ ବିବାହ କଲେ କିପରି ହୁଅନ୍ତା । ପୁଅ ଆଗରେ ଏପରି ପ୍ରସ୍ତାବ କରନ୍ତେ, ସେ ଅତ୍ୟନ୍ତ ସୁଖୀ ହେଲା । ତାର ପ୍ରିୟ ବନ୍ଧୁ ଏହି ବୈବାହିକ ବନ୍ଧନ ଦ୍ୱାରା ଆହୁରି ଅନ୍ତରଙ୍ଗ ହୋଇପାରିବ !

ତା' ପରଦିନ ସକାଳେ ଜୀମୂତବାହୁଙ୍କ ନିକଟରେ ରାଜପୁତ୍ର ମିତ୍ରାବସୁ ନିଜର ଭଗିନୀ ପ୍ରସ୍ତାବ ରଖି ରାଜା ବିଶ୍ୱାବସୁଙ୍କର ମନୋଭାବ ଜଣାଇଲା । ଜୀମୂତବାହୁ କହିଲେ, ''ଏପରି ପ୍ରସ୍ତାବ ଆମ ପାଇଁ ସୌଭାଗ୍ୟର କଥା । କିନ୍ତୁ ଆମର ରାଜ୍ୟ ନାହିଁ । ପୁଅ ଜୀମୂତବାହନ ଅରଣ୍ୟରେ ସନ୍ନ୍ୟାସୀର ଜୀବନଯାପନ କରୁଛି । ଏପରି ପରିବାରରେ ରାଜକନ୍ୟା ବଧୂ ଭାବରେ ଦୁଃଖ ପାଇବେ ନାହିଁ କି ?''

ମିତ୍ରାବସୁ କହିଲେ, ''ମହାରାଜ ! ଆପଣଙ୍କ ମନରେ କୌଣସି ଦ୍ୱିଧା ରହିବା ଉଚିତ ନୁହେଁ । ମୋର ପ୍ରିୟ ବନ୍ଧୁ ଜୀମୂତବାହନଙ୍କ ପରି ଉଦାରମନା ବୀରପୁରୁଷ କୋଟିକରେ ଗୋଟିଏ ମିଳିବେ । ତାଙ୍କ ପରି ଯୁବକକୁ ସ୍ୱାମୀ ରୂପରେ ଲାଭ କଲେ ଯେକୌଣସି ରାଜକୁମାରୀ ନିଜକୁ ଭାଗ୍ୟବତୀ ମନେ କରିବ । ମୋର ଭଗିନୀ ଜୀମୂତବାହନଙ୍କୁ ସ୍ୱାମୀ ରୂପେ ପାଇଲେ ଯେ ଅତ୍ୟନ୍ତ ସୁଖୀ ହେବ, ଏଥିରେ ଆଦୌ ସନ୍ଦେହ ନାହିଁ ।

ଏକ ପୁଣ୍ୟ ତିଥିରେ ବାହାଘର ହୋଇଗଲା । ରାଜକନ୍ୟା ମଳୟବତୀ ଝରଣାକୂଳରେ ଆଉ ଏକ କୁଟୀରରେ ନୂଆ ସଂସାର ରଚନା କଲେ । ପ୍ରକୃତିର ମଧୁମୟ କୋଳରେ ସେମାନଙ୍କର ସମୟ ଜଣାପଡୁ ନ ଥାଏ । ବେଳେ ବେଳେ ମିତ୍ରାବସୁ ଆସି ବନ୍ଧୁ ଓ ଭଗିନୀ ସହିତ ଆଳାପ କରି ସୁଖୀ ହେଉଥାଏ ।

ଦିନକର କଥା । ଜୀମୂତବାହନ ଅରଣ୍ୟ ପଥରେ ବନ୍ଧୁ ସହିତ ଭ୍ରମଣ କରୁ କରୁ ବହୁତ ଦୂରକୁ ଚାଲିଗଲେ । ତାହା ଥିଲା ଏକ ନିର୍ଜନ ପ୍ରାନ୍ତର । ସେଠାରେ ହାଡ଼ର ଛୋଟ ପାହାଡ଼ଟିଏ ଠିଆ ହୋଇଛି । ରାଜକୁମାର ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲେ, ''ଏତେ ହାଡ଼ ଆସିଲା କେଉଁଠୁ ?''

ମିତ୍ରାବସୁ କହିଲେ, ''ସେ ଅନେକ ପୁରୁଣା କଥା । ପୂର୍ବକାଳରେ କଶ୍ୟପ ନାମରେ ଜଣେ ପ୍ରସିଦ୍ଧ ଋଷି ଥିଲେ । ତାଙ୍କର ଦୁଇଟି ସ୍ତ୍ରୀ––କଦ୍ରୁ ଓ ବିନତା । ଏକହଜାର ସର୍ପ ସନ୍ତାନଙ୍କର ଜନନୀ ଥିଲେ କଦ୍ରୁ । ବିନତାଙ୍କର ଦୁଇଟି ସନ୍ତାନ––ଅରୁଣ ଓ ଗରୁଡ଼ । ଅରୁଣ ହେଲେ ସୂର୍ଯ୍ୟଙ୍କର ସାରଥୀ ।

କଦ୍ରୁ ଓ ବିନତା ଦୁଇ ସଉତୁଣୀ କେହି କାହାର ଛାଇ ସହିପାରନ୍ତି ନାହିଁ । ଦିନେ କଦ୍ରୁ ଓ ବିନତାଙ୍କ ମଧ୍ୟରେ କଥା ହେଉ ହେଉ ବାଜିପଡ଼ିଲା । ଇନ୍ଦ୍ରଙ୍କର ଘୋଡ଼ା ଉଚ୍ଚୈଃଶ୍ରବାର ବର୍ଣ୍ଣ କ'ଣ ? ଯାହାର କଥା ଅସତ୍ୟ ହେବ, ସେ ଦାସୀ ହୋଇ ଖଟିବ ।

ସମସ୍ତେ ଜାଣନ୍ତି, ଇନ୍ଦ୍ରଙ୍କ ଘୋଡ଼ାର ବର୍ଣ୍ଣ ଧଳା । ତେଣୁ ବିନତା 'ଧଳା' ବୋଲି କହିଲେ । ମାତ୍ର କଦ୍ରୁ କପଟ ରଖି କହିଲେ ଘୋଡ଼ାର ବର୍ଣ୍ଣ କଳା । ଏହି ବିବାଦର ସମାଧାନ ପାଇଁ ଦୁହେଁ ଘୋଡ଼ା ପାଖକୁ ଯିବା ସ୍ଥିର ହେଲା । ଯିବା ପୂର୍ବରୁ କଦ୍ରୁ ନିଜର ସର୍ପ ସନ୍ତାନମାନଙ୍କୁ କହିଲେ, ''ଘୋଡ଼ା ଦେହରେ ଗୁଡ଼େଇ ହୋଇ ରହିବା ପାଇଁ ।'' ତେଣୁ ବିନତା ଦେଖିବାକୁ ଗଲାବେଳେ ଦୂରରୁ ଘୋଡ଼ାଟି କଳାରଙ୍ଗର ଦେଖାଗଲା । ସେହିଦିନୁ ସେ କଦ୍ରୁଙ୍କର ଦାସୀ ହୋଇ ଦୁଃଖରେ ଥାଆନ୍ତି ।

କିଛିଦିନ ପରେ ବିନତାଙ୍କର ଦ୍ୱିତୀୟ ସନ୍ତାନ ରୂପେ ଗରୁଡ଼ ଜନ୍ମ ହେଲେ । ସେ ତ ମହାବୀର । ବିଷ୍ଣୁଙ୍କର ବାହନ ହେଲେ, ବିମାତାଙ୍କୁ ସନ୍ତୁଷ୍ଟ କରି ନିଜର ମାତାଙ୍କୁ ଦାସୀତ୍ୱରୁ ମୁକୁଳାଇଲେ । ହେଲେ ତାଙ୍କର ରାଗ ରହିଲା ସର୍ପମାନଙ୍କ ଉପରେ । ସେମାନଙ୍କର କପଟ ଆଚରଣ ପାଇଁ ମାଆ ହେଲେ ଦାସୀ । ତେଣୁ ଗରୁଡ଼ ରାଗରେ ପ୍ରତ୍ୟେକ ଦିନ ସର୍ପ ମାରି ଖାଇବାକୁ ଲାଗିଲେ ।

କ୍ରମେ କ୍ରମେ ସର୍ପକୁଳ ଧ୍ୱଂସ ହେବାର ଦେଖି ସର୍ପରାଜା ବାସୁକୀ ପ୍ରସ୍ତାବ କଲେ, ''ସେ ପ୍ରତ୍ୟେକ ଦିନ ଗରୁଡ଼ର ଖାଦ୍ୟ ପାଇଁ ଗୋଟିଏ ସର୍ପକୁ ପଠାଇବେ ।''

ଗରୁଡ଼ ଏହି ପ୍ରସ୍ତାବରେ ରାଜି ହେଲେ । ସେହିଦିନୁ ଏହି ଖୋଲା ପଡ଼ିଆରେ ଗରୁଡ଼ ସାପମାନଙ୍କୁ ଖାଇଆସୁଛି । ସେହିମାନଙ୍କର ହାଡ଼ ଏଠାରେ ଜମା ହେବାରେ ଲାଗିଛି ।''

ଜୀମୂତବାହନ ବଡ଼ ଦୁଃଖିତ ହେଲେ ଏପରି କଥା ଶୁଣି । ବାସ୍ତବିକ୍ କେଡ଼େ ନିଷ୍ଠୁର ଏ ଆଚରଣ । ସେଦିନ ରାତିରେ ସେ ଆଉ ଶୋଇପାରିଲେ ନାହିଁ । ପରଦିନ ରାତି ନ ପାହୁଣୁ ରାଜକୁମାର ପାହାଡ଼ର ସେହି ଖୋଲା ପଡ଼ିଆରେ ହାଜର ।

ଚାରିଆଡ଼େ ବୁଲିଆସି ଦେଖିଲେ, ଗୋଟିଏ ସ୍ଥାନରେ ବୁଢ଼ୀଟିଏ ବସି କାନ୍ଦୁଛି । ଜୀମୂତବାହନ ପାଖକୁ ଗଲେ । ଅତ୍ୟନ୍ତ ଆଦରରେ ପଚାରିଲେ, ''ମା' କ'ଣ ତୁମର ଦୁଃଖ ? ଏକୁଟିଆ ବସି କାନ୍ଦୁଛ କାହିଁକି ?''

ବୁଢ଼ୀଙ୍କର ଆଖିରୁ ଧାର ଧାର ଲୁହ ବୋହିଯାଉଥାଏ । ସେ ଅତ୍ୟନ୍ତ ବିକଳ ହୋଇ କହିଲେ, ''ପୁଅରେ ! ମୋର ଏକୋଇର ବଳା ବିଶିକେଶନ ଆଜି ମରଣ ଦୁଆରେ ଠିଆହୋଇଛି । ଗରୁଡ଼ର ଖାଦ୍ୟ ପାଇଁ ଆଜି ତା'ର ପାଳି । ମୋର ଆଉ କେହି ନାହିଁ । ତା'ରି ନାଁ ଶଙ୍ଖଚୂଡ଼ । ଆଉ ଅଳ୍ପ ସମୟ ପରେ ସେ ଠାକୁର ପୂଜା କରି ଆସିବ ।''

ଜୀମୂତବାହନ ବୁଢ଼ୀକୁ ଅନେକ ସାନ୍ତ୍ୱନା ଦେଲେ । କହିଲେ, ''ମା' ତୁମେ ଘରକୁ ଫେରିଯାଅ । ପୁଅକୁ ନେଇ ସୁଖରେ ରହ । ମୁଁ ତୁମ ପାଳିରେ ଆଜି ଗରୁଡ଼ ପାଖକୁ ଯିବି ।''

ବୁଢ଼ୀ କହିଲା, ''ନାହିଁରେ ପୁଅ ! କେଡ଼େ କଥା କହିଲୁ । ମୋର ଅଭାଗ୍ୟ କପାଳ ମୁଁ ଭୋଗ କରିବି । ଆଉ ଗୋଟିଏ ମାଆକୁ ସେ ଦୁଃଖ ମୁଁ ଦେଇପାରିବି ନାହିଁ ।''

ରାଜକୁମାର ବୁଝାଇଲା, ''ମା' ତୁମେ ବ୍ୟସ୍ତ ହୁଅନାହିଁ । ମୋର ମା'ଙ୍କୁ ମୁଁ ବୁଝାଇଦେବି ।''

ଏତିକିବେଳେ ହଠାତ୍ ଆକାଶଆଡୁ ଗରୁଡ଼ ଉଡ଼ିଆସିଲା ସେଇ ଖୋଲାପଡ଼ିଆ ଉପରକୁ । ଶଙ୍ଖଚୂଡ଼ର ଆସିବାରେ ସାମାନ୍ୟ ବିଳମ୍ବ ଦେଖି ଜୀମୂତବାହନ ଦୌଡ଼ିଯାଇ ନିର୍ଦ୍ଦିଷ୍ଟ ପଥର ଉପରେ ବସିପଡ଼ିଲା । ଆକାଶରୁ ଉଡ଼ିଆସି ଝାମ୍ପ ମାରି ଗରୁଡ଼ ରାଜକୁମାରକୁ ଟେକିନେଇ ଚାଲିଗଲା ।

ଗରୁଡ଼ର ନଖ ଆଘାତରେ ରାଜକୁମାର ରକ୍ତରେ ସୁତୁବୁତୁ ହୋଇଯାଇଥାଏ । ତଥାପି ତା'ର ମନରେ ଆନନ୍ଦ ଯେ ସେ ଆଜି ନିଜର ଜୀବନ ବିନିମୟରେ ଆଉ ଜଣଙ୍କର ପ୍ରାଣରକ୍ଷା କରିପାରିଛି ।

ଗରୁଡ଼ ଉଡ଼ି ଉଡ଼ି ଯାଉଥାଏ । ହେଲେ ଆଜି କାହିଁକି କିଛି ବ୍ୟତିକ୍ରମ ବୋଧ ହେଉଥାଏ । ପ୍ରତ୍ୟେକ ଦିନ ତାର ଶିକାର ଛାଟିପିଟି ହୁଏ ଜୀବନ ବଞ୍ଚାଇବା ପାଇଁ । ଅନେକ ବିକଳ ହୋଇ ପ୍ରାଣଭିକ୍ଷା କରନ୍ତି । ମାତ୍ର ଆଜି ଏ କ'ଣ ହେଲା ? ଆଜି ତାର ଶିକାର ସାମାନ୍ୟତମ ବିଚଳିତ ମଧ ହେଉନାହିଁ ।

ଏତିକିବେଳେ ଠାକୁରପୂଜା ସାରି ସର୍ପ ଶଙ୍ଖଚୂଡ଼ ଆସି ପଡ଼ିଆରେ ହାଜର । ସେ ଆସି ଦେଖିଲା, ପଡ଼ିଆର ଗୋଟିଏ କୋଣରେ ତା'ର ବୁଢ଼ୀମା' ବସି କାନ୍ଦୁଛି । ଗରୁଡ଼ କାହାକୁ ଝେପା ମାରି ନେଇ ପଳାଉଛି । ବୁଢ଼ୀମା'ଠାରୁ ସମସ୍ତ ଶୁଣି ସେ ବଡ଼

ବ୍ୟସ୍ତ ହୋଇପଡ଼ିଲା । ତାର ସାମାନ୍ୟ ବିଳମ୍ବ ହେତୁ ଆଉ ଜଣେ ନିରୀହ ପ୍ରାଣୀର ଜୀବନ ଯାଉଛି । ସେ ପଡ଼ିଆରେ ଦଉଡ଼ି ଦଉଡ଼ି ଚିତ୍କାର କଲା, ''ହେ ଗରୁଡ଼ ! ମୁଁ ତୁମର ଖାଦ୍ୟ । ଦୟାକରି ମୋତେ ଗ୍ରହଣ କର । ସେହି ନିରୀହ ପ୍ରାଣୀଟିକୁ ରକ୍ଷା କର ।''

ଗରୁଡ଼ କାନରେ ଯେମିତି ଏହି କଥା ପଡ଼ିଲା, ସେ ଫେରିଆସିଲା ଖୋଲା ପଡ଼ିଆର ପଥର ଉପରକୁ । ସେତେବେଳକୁ ତା'ର ପନ୍ଝା ଭିତରେ ବନ୍ଦୀ ହୋଇ ରାଜକୁମାର ଦରମଲା ଅବସ୍ଥାରେ ।

ଗରୁଡ଼ ପଚାରିଲା, ''ତୁ କିଏ ? ଏପରି ପ୍ରାଣ ଦେବାର ଉଦ୍ଦେଶ୍ୟ କଅଣ ?''

ଜୀମୂତବାହନ ଗରୁଡ଼କୁ ବହୁ କଷ୍ଟରେ ହାତଉଠାଇ ନମସ୍କାର କଲେ । କହିଲେ, ''ଗୋଟିଏ ମା'ର ବିକଳ ମୁଁ ସହିପାରିଲି ନାହିଁ । ମୋ ଜୀବନର ବିନିମୟରେ ଯଦି ଜଣେ ମାତା ତା'ର ସନ୍ତାନର ଜୀବନ ଫେରିପାଇବ, ତେବେ ମୋର ସୌଭାଗ୍ୟ ଆଉ କ'ଣ ଅଛି ?''

ଗରୁଡ଼ ଅତ୍ୟନ୍ତ ମୁଗ୍ଧ ହେଲା ଏପରି ଆତ୍ମତ୍ୟାଗର କାହାଣୀ ଶୁଣି । ସେ ଖୁସି ହୋଇ ଅମୃତ ବୋଳି ରାଜକୁମାରଙ୍କୁ ସୁସ୍ଥ କରିଦେଲା । କହିଲା, ''ମୁଁ ତୋର ଆଚରଣରେ ସନ୍ତୁଷ୍ଟ । ମୋତେ ତୋର ଅଭିଳାଷ ଖୋଲି କରି କହ ।''

ଜୀମୂତବାହନ କହିଲେ, ''ହେ ପକ୍ଷୀରାଜ ! ଯଦି ଆପଣ ମୋ ପ୍ରତି ଦୟା କଲେ, ତେବେ ଆଜିଠାରୁ ଆଉ ସର୍ପକୁଳକୁ ଧ୍ୱଂସ କରନ୍ତୁ ନାହିଁ । ଯେଉଁମାନଙ୍କୁ ହତ୍ୟା କରି ଏହି ହାଡ଼ର ପାହାଡ଼ ତିଆରି ହୋଇଛି, ଅମୃତ ବର୍ଷା କରି ସେମାନଙ୍କୁ ଜୀବନ ଦାନ କରନ୍ତୁ ।''

ଗରୁଡ଼ ତାହାହିଁ କଲେ । ସର୍ପକୁଳ ରକ୍ଷା ପାଇଲେ । ଆତ୍ମତ୍ୟାଗ ପାଇଁ ସମସ୍ତେ ଜୀମୂତବାହନଙ୍କୁ ଧନ୍ୟ ଧନ୍ୟ କଲେ ।



